୧୭ । ବିବିଧ ପ୍ରଶ୍ନ (ଗ) ୧ମ ରୁ ୫ମ ନମ୍ବର ।
୧୮ । ,, ୬ଷ୍ଠ ରୁ ୧୦ମ ନମ୍ବର ।
୧୯ । ,, (ଘ) ୧ମ ରୁ ୫ମ ନମ୍ବର ।
୨୦ । ,, ୬ଷ୍ଠ ରୁ ୧୦ମ ନମ୍ବର ।
୨୧ । ,, (ଙ) ୧ମ ରୁ ୫ମ ନମ୍ବର ।
୨୨ । ,, ୬ଷ୍ଠ ରୁ ୧୦ମ ନମ୍ବର ।
୨୩ । ,, (ଚ) ୧ମ ରୁ ୫ମ ନମ୍ବର ।
୨୪ । ,, ୬ଷ୍ଠ ରୁ ୧୦ମ ନମ୍ବର ।

## ମଇ ୨ ସପ୍ତାହ — ୧୨ ପାଠ

ପୂର୍ବ ପଠିତ ସମସ୍ତ ବିଷୟର ପୁନରାଲୋଚନା କରାଯିବ ।

ବିଶେଷ କରି ଭଗ୍ନାଂଶ, କ୍ଷେତ୍ର ପରିଚୟ ଓ ରେଖାଖଣ୍ଡ ଓ ରଶ୍ମି ସମ୍ପର୍କରେ

ଅଧିକ ଆଲୋଚନା କରିଯିବା ବିଧେୟ ।



# ସାମାଜିକ ପାଠ

ଆଗେ ବିଦ୍ୟାଳୟମାନଙ୍କରେ ଇତିହାସ ଓ ଭୂଗୋଳ ବିଷୟ ଦୁଇଟି ସ୍ୱତନ୍ତ୍ର ଭାବରେ ଶିକ୍ଷା ଦିଆଯାଉଥିଲା । ଇତିହାସ ଓ ଭୂଗୋଳ ଆମକୁ ଆମ ସାମାଜିକ ସ୍ଥିତି ସମ୍ପର୍କରେ ସଚେତନ କରିଥାଏ । ଏହି ବିଷୟ ଦୁଇଟିର ସମାଜ ସହିତ ନିବିଡ ସମ୍ବନ୍ଧ ଥିବା ଦୃଷ୍ଟିରୁ ବର୍ତ୍ତମାନ ଏହି ବିଷୟ ଦୁଇଟିକୁ 'ସାମାଜିକ ପାଠ' ନାମରେ ଏକତ୍ର ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଇଛି ।

ଶିକ୍ଷକ ମହାଶୟ ସାମାଜିକ ପାଠ ଶିକ୍ଷାଦାନର ଗୁରୁତ୍ୱ ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ହୋଇ ଶିକ୍ଷାଦାନରେ ବ୍ରତୀ ହେଲେ ଏହା ମହୋପକାର ସାଧନ କରିବ ।

ଇତିହାସ ବା ଭୂଗୋଳର କେତେକ ଶୁଷ୍କ ବିଷୟଗତ ଧାରଣା ଯୋଗାଇ ନଦେଇ ପଠିତ ବିଷୟ ଦ୍ୱାରା ଆମେ କିପରି ଏକ ସୁସ୍ଥ ସାମାଜିକ ଜୀବନ ଗଠନ କରିପାରିବା, ଆମ ସମାଜ ଉନ୍ନତ ହେବ ଏହି ଲକ୍ଷ୍ୟ ରଖି ଅଧ୍ୟାପନା କାର୍ଯ୍ୟ ପରିଚାଳିତ ହେବା ବିଧେୟ । ଅତୀତ ଘଟଣାର ଭଲମନ୍ଦ କଥା ବିଚାରକୁ ନେଇ ସୁନ୍ଦର ଭବିଷ୍ୟତ ଗଠନ ପାଇଁ ପିଲମାନଙ୍କୁ ମୂଳରୁ ପ୍ରସ୍ତୁତ କରିବା ମଧ୍ୟ ସାମାଜିକ ପାଠର ଲକ୍ଷ୍ୟ ହେବା ଉଚିତ ।

ଶିକ୍ଷାଦାନ ସମୟରେ ସମାଜପ୍ରତି ଆମର କର୍ତ୍ତବ୍ୟ, ଜାତୀୟ ସଂହତି, ଆନ୍ତର୍ଜାତୀୟ ସୌହାର୍ଦ୍ଦ୍ୟ ପ୍ରଭୃତି ସଦ୍‌ଗୁଣ ଗୁଡ଼ିକର ବିକାଶପ୍ରତି ଦୃଷ୍ଟି ଦିଆଯିବ ।

ଜାତି ଧର୍ମ ଓ ଭାଷାକୁ କେନ୍ଦ୍ର କରି ଆମଭିତରେ ଯେଉଁ ସବୁ ଅନ୍ଧ ବିଶ୍ୱାସ ଓ କୁସଂସ୍କାରମାନ ରହିଅଛି ସେଗୁଡିକ ଶିଶୁ ମନରୁ ସଂପୂର୍ଣ୍ଣ ଅପସାରିତ କରିବା ଦିଗରେ ନିଶ୍ଚୟ ଚେଷ୍ଟା କରାଯିବ ।

ଏହି ବିଷୟର ଅଧ୍ୟାପନା ସମୟରେ ଖାଲି ବହି ଧରି ନପଢାଇ ବହୁ ବିଭିନ୍ନ ଉଦାହରଣ ଆଲୋଚନା ଓ ପ୍ରତ୍ୟକ୍ଷ ଅନୁଭୂତିର ଉପଯୋଗ କରାଯିବ । ବିଭିନ୍ନ ଐତିହାସିକ ଓ ଭୌଗୋଳିକ ସ୍ଥାନର ପରିଭ୍ରମଣ, ପରିଦର୍ଶନ ଏବଂ ସାକ୍ଷାତକାର ଆଦିର ଅପରିହାର୍ଯ୍ୟ ଆବଶ୍ୟକତା ଅଛି ।

— — —

ସାପ୍ତାହିକ ୪ ପାଠ ହିସାବରେ ବର୍ଷକୁ ୪୦ × ୪ = ୧୬୦ ପାଠ

ଶ୍ରେଣୀପାଇଁ ଉଦ୍ଦିଷ୍ଟ 'ସାମାଜିକ ପାଠ' ପୁସ୍ତକ ୧୬୦ ଟି ପାଠରେ ଶିକ୍ଷା- ଦିଆଯିବାର ବ୍ୟବସ୍ଥା କରାଯାଇଛି । ମାନଚିତ୍ର ଅଙ୍କନ ଓ ମାନଚିତ୍ର ଅଧ୍ୟୟନ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି । ପିଲମାନେ ବହୁଳ ଭାବରେ ମାନଚିତ୍ର ଅଙ୍କନ କରି ସେ ସଂପର୍କରେ ବିଶେଷ ଦକ୍ଷତା ଅର୍ଜନ କରିବା ପାଇଁ ଲକ୍ଷ୍ୟ ରଖାଯିବ ।

## ଜୁନ୍ ୧ ସପ୍ତାହ — ୪ ପାଠ

୧ । ମାନଚିତ୍ରରୁ ଭାରତ ଓ ତାହାର ପଡ଼ୋଶୀ ଦେଶ ବିଷୟରେ ଧାରଣା ।
୨ । କଳାପଟାରେ ଭାରତ ମାନଚିତ୍ର ଅଙ୍କନ କରିବା । ( ଶିକ୍ଷକଙ୍କ ଦ୍ୱାରା )
୩ । ପିଲାମାନେ ଖାତାରେ ପଡ଼ୋଶୀ ଦେଶ ଓ ଚତୁଃସୀମା ଚିହ୍ନିତ କରିବା ।
୪ । ଅଙ୍କିତ ମାନଚିତ୍ରରେ ପଡ଼ୋଶୀ ଦେଶ ଓ ଚତୁଃସୀମା ଚିହ୍ନିତ କରିବା ।

## ଜୁଲାଇ ୪ ସପ୍ତାହ — ୧୬ ପାଠ

( ୧ମ ଅଧ୍ୟାୟ )

୧ । ଆମ ଦେଶର ପ୍ରାକୃତିକ ବିଭାଗ ଓ ପାଣି ପାଗର ଧାରଣା ।
୨ । ଭାରତର ଆଂଶିକ ମାନଚିତ୍ର ଅଙ୍କନ ( ଦକ୍ଷିଣଭାରତ, ଶ୍ରୀଲଙ୍କା )
୩ । ଭାରତର ଚତୁଃସୀମା ଓ ପଡ଼ୋଶୀ ରାଜ୍ୟର ନୋଟ୍ ପ୍ରଦାନ ।
୪ । ଉପଦ୍ୱୀପ ଓ ଅନ୍ତରୀପର ଧାରଣା ( କୁମାରିକା )
୫ ଓ ୬ । ଭାରତର ପ୍ରାକୃତିକ ବିଭାଗର ମାନଚିତ୍ର ଅଙ୍କନ ।
୭ । ଭାରତର ପ୍ରାକୃତିକ ମାନଚିତ୍ରରେ ପାଞ୍ଚଟି ପ୍ରାକୃତିକ ବିଭାଗ ଚିହ୍ନାଇବା ।
୮ । ମାନଚିତ୍ରରେ କେଉଁ ବିଭାଗ ପାଇଁ କେଉଁ ରଙ୍ଗ ବ୍ୟବହୃତ ହୋଇଛି ଜାଣିବା ।
୯ । ଭାରତର ନଦୀ ବିଷୟରେ ଧାରଣା ।
୧୦ । ଭାରତର ନଦୀ ଚିହ୍ନିତ ମାନଚିତ୍ର ଅଙ୍କନ ।
୧୧ । ଭାରତରେ ନଦୀଗୁଡ଼ିକର ଉତ୍ପତ୍ତି ଓ ପତନ ସ୍ଥାନ ବିଷୟରେ ନୋଟ୍ ପ୍ରଦାନ ।
୧୨ । ଉତ୍ତର ଭାରତରେ ନଦୀ ସବୁ ବର୍ଷ ସାରା ପାଣିପୂର୍ଣ୍ଣ ରହିବାର କାରଣ ଓ ଉତ୍ତର ଭାରତର ସମତଳ ଭୂମି ଅତି ଉର୍ବର କାହିଁକି ? ଏ ବିଷୟରେ ଧାରଣା ପ୍ରଦାନ ।
୧୩ । ଦକ୍ଷିଣ ଭାରତର ନଦୀ ସଂପର୍କରେ ଆଲୋଚନା ଓ ନୋଟ୍ ପ୍ରଦାନ ।
୧୪ । ଆମ ଦେଶର ପାଣି ପାଗ ।
୧୫ । ମୌସୁମୀବାୟୁର ଧାରଣା ।
୧୬ । ଆମଦେଶରେ ବର୍ଷା ।

## ଅଗଷ୍ଟ ୪ ସପ୍ତାହ ୧୬ ପାଠ

୧ । ଆମ ଦେଶରେ ବର୍ଷା ।
୨ । ଭାରତର ମାନଚିତ୍ର ଅଙ୍କନ କରି ତହିଁରେ ଦକ୍ଷିଣ-ପୂର୍ବ ମୌସୁମୀ ବାୟୁର ଗତିପଥକୁ ତୀର ଚିହ୍ନିତ କରିବା ।
୩ । ମୌସୁମୀ ବାୟୁଦ୍ୱାରା କେଉଁଠି ଅଧିକ ଓ କେଉଁଠି ଅଳ୍ପ ବର୍ଷା ହୁଏ କାହିଁକି ?
୪ । ଭାରତର ମାନଚିତ୍ର 'ଉତ୍ତର ପୂର୍ବ ମୌସୁମୀ ବାୟୁ'ର ଗତିପଥ ଚିହ୍ନିତ କରିବା ।

୫ । ଏହି ଉତ୍ତର-ପୂର୍ବ ମୌସୁମୀ ବାୟୁ କେଉଁଠି ବର୍ଷା କରେ ? କାହିଁକି ?

୬ ଓ ୭ । ଆମ ଦେଶରେଥିବା ମରୁଅଞ୍ଚଳର ଧାରଣା । ମରୁଭୂମି ହେବାର କାରଣ କଅଣ ? ମରୁ ଅଞ୍ଚଳର ଜୀବନଯାତ୍ରା ।

୮ ରୁ ୧୦ । ବହିର ୬ଷ୍ଠ ପୃଷ୍ଠାରେ ଥିବା ମନେରଖିବ ଉତ୍ତରଗୁଡ଼ିକ ପିଲାମାନଙ୍କୁ ବାରମ୍ବାର ବୁଝାଇ ଦିଆଯିବ ଓ ତାହା ଯେପରି ସେମାନଙ୍କର ମନେ ରହିଯାଏ ଦେଖିବାକୁ ହେବ ।

୧୧ । ଉତ୍ତର ଦିଅ ୭ମ ପୃଷ୍ଠାର ୧ମ ନମ୍ବରରୁ ୪ର୍ଥ ନମ୍ବର ପର୍ଯ୍ୟନ୍ତ ସମାଧାନ ।

୧୨ । ,, ୫ମ ଓ ୬ଷ୍ଠ ନମ୍ବରର ସମାଧାନ ।

୧୩ ଓ ୧୪ । ଭାରତର ମାନଚିତ୍ର ଅଙ୍କନ କରି ଚିତ୍ରରେ ପ୍ରାକୃତିକ ବିଭାଗ ଚିହ୍ନାଇବା ।

୧୫ । ମାନଚିତ୍ରରେ (ଉତ୍ତରଭାରତର) ନଦୀ ଚିହ୍ନାଇବା ।

୧୬ । ,, ଦକ୍ଷିଣଭାରତର ନଦୀ ଚିହ୍ନାଇବା ।

## ସେପ୍ଟେମ୍ବର ୪ ସପ୍ତାହ –୧୭ ପାଠ
### (ଦ୍ୱିତୀୟ ଅଧ୍ୟାୟ)

୧ । ଆମ ଦେଶର ପ୍ରାକୃତିକ ସଂପଦ ଓ ତାହାର ବ୍ୟବହାର ।

୨ ରୁ ୪ । ବଣ ଜଙ୍ଗଲ ।

୫ । ଚାରଣ ଭୂମି ।

୬ । ଆମର ଗୃହପାଳିତ ପଶୁ ।

୭ ଓ ୮ । ଆମ ଦେଶର ଫସଲ ।

୯ । ଆମ ଦେଶର କଳ କାରଖାନା ।

୧୦ । ଜଳ ସଂପଦର ଉପଯୁକ୍ତ ବିନିଯୋଗ ।

୧୧ । ହୀରାକୁଦ, ଦାମୋଦର ଉପତ୍ୟକା ।

୧୨ । ଭାକ୍ରା ନଙ୍ଗଲ, ନାଗାର୍ଜୁନ ସାଗର ।

୧୩ । ଆମ ଦେଶର ମତ୍ସ୍ୟ ସଂପଦ ।

୧୪ଓ୧୫ । ଆମ ଖଣିଜ ସଂପଦ ।

୧୬ । ଆମର ଲୋକ ସଂପଦ ।

## ଅକ୍ଟୋବର ୩ ସପ୍ତାହ — ୧୨ ପାଠ

୧ । ୩ । ୧୫ ପୃଷ୍ଠାରେ ଥିବା ମନେରଖିବ ୧୪ ଗୋଟି ଉତ୍ତରକୁ ପିଲାମାନଙ୍କୁ ଉତ୍ତମ ରୂପେ ବୁଝାଇ ନୋଟ୍ ପ୍ରଦାନ କରାଯିବ ।

୪ । 'ଉତ୍ତର ଦିଅର' ୧ମ ରୁ ୩ୟ ପ୍ରଶ୍ନର ସମାଧାନ ।

୫ । ,, ୪ର୍ଥ ରୁ ୬ଷ୍ଠ ପ୍ରଶ୍ନର ସମାଧାନ ।

୬ । ,, ୭ମ ରୁ ୧୦ମ ,, ।

୭ । ଉତ୍ତର ଦିଅ'ର ୧୧ଶ ରୁ ୧୩ଶ ପ୍ରଶ୍ନର ସମାଧାନ ।
୮ । ,, ୧୪ଶ ଓ ୧୫ଶ ,, ।
୯ ଓ ୧୦ । ଭାରତମାନଚିତ୍ର ଅଙ୍କନ କରି ସେଥିରେ କୋଇଲା ଲୁହା ଓ ଖଣିଜ ତେଲ ମିଳୁଥିବା ସ୍ଥାନଗୁଡ଼ିକ ଚିହ୍ନିତ କରାଯିବ ।
୧୧ ଓ ୧୨ । ଭାରତ ମାନଚିତ୍ରରେ ଧାନ, ଗହମ ଓ କଫି ଅଧିକ ହେଉଥିବା ଅଞ୍ଚଳମାନ ଚିହ୍ନିତକରିବା ।

## ନଭେମ୍ବର ୪ ସପ୍ତାହ — ୧୬ ପାଠ
( ୩ୟ ଅଧ୍ୟାୟ )

୧ ଓ ୨ । ଆମ ଦେଶର ଗମନା ଗମନ ଯୋଗାଯୋଗ ।
୩ । ,, ରେଳପଥ ।
୪ । ଓଡ଼ିଶାର ମାନଚିତ୍ର ଅଙ୍କନ ।
୫ । ତହିଁରେ ବିଭିନ୍ନ ଜିଲ୍ଲା ଚିହ୍ନିତ କରିବା ।
୬ । ଓଡ଼ିଶାରେ ଯାଇଥିବା ରେଳପଥ ଦେଖାଇବା ।
୭ ଓ ୮ । ଜଳପଥ
୯ । ଆକାଶ ପଥ ।
୧୦ । ଯୋଗାଯୋଗ ( ଚିଠି, ଟେଲିଗ୍ରାମ, ଟେଲିଫୋନ୍ )
୧୧ । ଯୋଗାଯୋଗ ( ରେଡ଼ିଓ, ଟେଲିଭିଜନ) ।
୧୨ ଓ ୧୩ । ୨୩ ପୃଷ୍ଠାର 'ମନେରଖ'ର ୧୯ ଗୋଟି ଉକ୍ତି ପିଲମାନଙ୍କ ମଧ୍ୟରେ ବାରମ୍ବାର ଆଲୋଚିତ ହୋଇ ନୋଟ୍ ପ୍ରଦାନ କରାଯିବ ।
୧୪ । 'ଉତ୍ତର ଦିଅ'ର ୧ମରୁ ୪ର୍ଥ ନମ୍ବର ସମାଧାନ ।
୧୫ । ,, ୫ମ ରୁ ୮ମ ,, ।
୧୬ । ,, ୯ମ ରୁ ୧୨ଶ ,, ।

## ଡିସେମ୍ବର ୩ ସପ୍ତାହ — ୧୨ ପାଠ
( ୪ର୍ଥ ଅଧ୍ୟାୟ )

୧ ସ୍ୱତନ୍ତ୍ର ଭାରତର ମାନଚିତ୍ର ଅଙ୍କନ ।
୨ ଓ ୩ । ଭାରତ ମାନଚିତ୍ରରେ ୨୨ଟି ରାଜ୍ୟ ଚିହ୍ନିତ ହେବ ।
୪ । ଭାରତ ମାନଚିତ୍ରରେ ବିଭିନ୍ନ ୯ଟି କେନ୍ଦ୍ର ଶାସିତ ଅଞ୍ଚଳ ଚିହ୍ନିତ କରିବା ।
୫ । କେନ୍ଦ୍ର ସରକାରର ଧାରଣା ଓ ଆମଦେଶରେ କଥିତ ବିଭିନ୍ନ ଭାଷା ।
୬ ଓ ୭ । ଭାରତର ବିଭିନ୍ନ ଧର୍ମ — ହିନ୍ଦୁ, ବୌଦ୍ଧ, ଜୈନ, ଇସଲାମ୍, ଖ୍ରୀଷ୍ଟ ଓ ଶିଖ୍ ।
୮ । ଭାରତର ବିଭିନ୍ନ ଅଞ୍ଚଳର ପୋଷାକପତ୍ର ।
୯ । ବିଭିନ୍ନତା ଥିଲେ ମଧ୍ୟ ଆମେ ସମସ୍ତେ ଭାରତୀୟ ।

୧୦ । ୨୮ ଓ ୨୯ ପୃଷ୍ଠାରେ ଥିବା 'ମନେରଖର' ୧୦ଟିଯାକ ପ୍ରଶ୍ନର ଉତ୍ତର ।
୧୧ । ଉତ୍ତର ଦଅଉ ୧ମ ଓ ୨ୟ ପ୍ରଶ୍ନର ସମାଧାନ ।
୧୨ । ,, ୩ୟ ରୁ ୫ମ ,, ,, ।

## ଜାନୁଆରୀ ୪ ସପ୍ତାହ ୧୨ ପାଠ

( ୫ମ ଅଧ୍ୟାୟ )

୧ । ଆମ ସମ୍ବିଧାନ ଆମମାନଙ୍କ ମଧ୍ୟରେ ଏକତା ଆଣିଛି । (ଆଲୋଚନା)
୨ । ଆମ ଜାତୀୟ ପତାକା ଓ ତାର ପ୍ରତୀକ ।
୩ ଓ ୪ । ଆମ ଜାତୀୟ ସଙ୍ଗୀତ ।
୫ । ଆମ ଜାତୀୟ ଉତ୍ସବ ।
୬ ରୁ ୮ । ଭାରତର ରାଜ୍ୟ ଓ ରାଜଧାନୀ ସମ୍ବନ୍ଧୀୟ ମାନଚିତ୍ର ।
୯ । ମନେରଖର ୪ ଟିଯାକ ଉତ୍ତର ପିଲାମାନେ ଉତ୍ତମରୂପେ ପଢି ବୁଝି ମନେ ରଖିଛନ୍ତି କି ନାହିଁ ତାହାର ଆଲୋଚନା ।
୧୦ । 'ଉତ୍ତର ଦିଅ'ରେ ଥିବା ପ୍ରଶ୍ନରୁ ୧ମ ଓ ୨ୟ ନମ୍ବର ।
୧୧ । ,, ୩ୟ ଓ ୪ର୍ଥ ନମ୍ବର ।
୧୨ ଓ ୧୩ । ,, ୫ମ ରୁ ୭ମ ନମ୍ବର ।
୧୪ । ଜାତୀୟ ପତାକାର ଚିତ୍ର ଅଙ୍କନ ।
୧୫ ଓ ୧୬ । ଜାତୀୟ ସଙ୍ଗୀତର ମୁଖସ୍ଥ ଓ କରଣ ଆବୃତ୍ତି ।

## ଫେବୃଆରୀ ୪ ସପ୍ତାହ — ୧୬ ପାଠ

( ୬ଷ୍ଠ ଅଧ୍ୟାୟ )

( ଆମ ଜୀବନକୁ ସୁନ୍ଦର ଓ ସରସ କରୁଥିବା କେତେ ବିଷୟ )

୧ । ଭାରତୀୟ ସଂସ୍କୃତିର ଗଠନ ।
୨ ଓ ୩ । ଆମର ସଂସ୍କୃତି ।
୪ ରୁ ୮ । ଐତିହାସିକ କୀର୍ତ୍ତି ଓ ଉତ୍ସବ ।
୯ । ତୀର୍ଥକ୍ଷେତ୍ର ।
୧୦ । ଭାଷା ଓ ଲିପି, ଭାରତର ବିଭିନ୍ନ ଧର୍ମ ଓ ପର୍ବପର୍ବାଣି ।
୧୧ ରୁ ୧୩ । ଭାରତର ପୋଷାକପତ୍ର, ସଙ୍ଗୀତ, ନୃତ୍ୟ ଓ ଖେଳ କସରତ ।
୧୪ । ହାତକାମ ।
୧୫ । କେଉଁଠି କେଉଁ ଜିନିଷ ମିଳେ ତାହାର ନୋଟ ପ୍ରଦାନ ।
୧୬ । ଆମ ସଂସ୍କୃତିକୁ ଉନ୍ନତ କରିଥିବା ବ୍ୟକ୍ତିମାନଙ୍କ ସଂପର୍କରେ ଆଲୋଚନା ଓ ସଂକ୍ଷିପ୍ତ ଟିପ୍ପଣୀ ପ୍ରଦାନ— ( ବୁଦ୍ଧ, ଅଶୋକ, କାଳିଦାସ, ରବୀନ୍ଦ୍ର, ଖାରବେଳ ଆଦି ) ।

## ମାର୍ଚ୍ଚ ୩ ସପ୍ତାହ — ୧୨ ପାଠ

୧ । ମନେରଖ ର ଦଶଟିଯାକ ଉତ୍ତର ଉତ୍ତମରୂପେ ଆଲୋଚିତ ହୋଇ ନୋଟ୍ ଡାକ ଦିଆଯିବ ।
୨ । ଉତ୍ତରଦଅ ର ୧ମ ଓ ୨ୟ ପ୍ରଶ୍ନ ।
୩ । ,, ୩ୟ ଓ ୪ର୍ଥ ପ୍ରଶ୍ନ ।
୪ । ,, ୫ମ ଓ ୬ଷ୍ଠ ପ୍ରଶ୍ନ ।
୫ । କେତେକ ବାଦ୍ୟ ଯନ୍ତ୍ରର ରେଖାଚିତ୍ର ଅଙ୍କନ ।
୬ । କେତେକ ବାଦ୍ୟଯନ୍ତ୍ରର ରେଖାଚିତ୍ର ଅଙ୍କନ ।
୭ । (୭ମ ଅଧ୍ୟାୟ) କେଉଁମାନେ ଆମ ଦେଶକୁ ଗଢ଼ିଛନ୍ତି ?
୮ । ଅଶୋକ ।
୯ । ଖାରବେଳ ।
୧୦ । ଆକବର ।
୧୧ । ଶିବାଜୀ ।
୧୨ । ରାଜା ରାମମୋହନ ରାୟ ।

## ଏପ୍ରିଲ ୪ ସପ୍ତାହ — ୧୬ ପାଠ

୧ । ଉତ୍କଳମଣି ଗୋପବନ୍ଧୁ ।
୨ । କାଳିଦାସ, ରବୀନ୍ଦ୍ରନାଥ ।
୩ । ସରୋଜିନୀ ନାଇଡୁ ।
୪ । ଆର୍ଯ୍ୟଭଟ୍ଟ ।
୫ । ସି· ଭି· ରମଣ ।
୬ । କବୀର ।
୭ । ତୁଳସୀ ଦାସ ।
୮ । 'ମନେରଖ'ରେ ଥିବା ୫ଟି ଯାକ ଉତ୍ତରର ଆଲୋଚନା ଓ ନୋଟ ପ୍ରଦାନ ।
୯ । ଉତ୍ତର ଦଅର ୧ମରୁ ୫ମ ପ୍ରଶ୍ନ ।
୧୦ । ,, ୬ଷ୍ଠରୁ ୧୦ମ ପ୍ରଶ୍ନ ।
୧୧ । ,, ୧୧ଶରୁ ୧୪ଶ ପ୍ରଶ୍ନ ।

(ଅଷ୍ଟମ ଅଧ୍ୟାୟ)

୧୨ । ସ୍ୱାଧୀନତା ପାଇଁ ଆମର ଆନ୍ଦୋଳନ, ଇଂରେଜ ଶାସନ ବିରୋଧରେ ଲୋକଙ୍କ ଅସନ୍ତୋଷ ।
୧୩ । ସିପାହୀ ବିଦ୍ରୋହ ।
୧୪ । ଜାତୀୟ କଂଗ୍ରେସ ।
୧୫ । ସ୍ୱଦେଶୀ ଆନ୍ଦୋଳନ, ମହାତ୍ମାଗାନ୍ଧି ଓ ଅସହଯୋଗ ଆନ୍ଦୋଳନ ।
୧୬ । ମୌଲାନା ଆଜାଦ୍ ଓ ଜବାହରଲାଲ ।

## ମଇ ମାସ ୨ ସପ୍ତାହ     ୮ ପାଠ

୧ । ଭାରତର ସ୍ୱାଧୀନତା ଲାଭ ଓ ଜାତୀୟବାହିନୀ ଗଠନ (ସୁଭାଷବୋଷ)
୨ । 'ମନେରଖ'ର ୫ଟିଯାକ ଉତ୍ତରର ବିଶଦ ଆଲୋଚନା ଓ ନୋଟ୍ ପ୍ରଦାନ ।
୩ । 'ଉତ୍ତରଦିଅ'ର ୧ମରୁ ୩ୟ ପ୍ରଶ୍ନ ।
୪ । ,, ୪ର୍ଥରୁ ୬ଷ୍ଠ ପ୍ରଶ୍ନ ।
୫ରୁ ୮ । ପୁନରାଲୋଚନା ।

## ବାର୍ଷିକ ପରୀକ୍ଷା



# ସାଧାରଣ ବିଜ୍ଞାନ

ବର୍ତ୍ତମାନ ବିଜ୍ଞାନ ଯୁଗ । ବିଜ୍ଞାନ ଅନୁଶୀଳନ କରି ମନୁଷ୍ୟ ଅସମ୍ଭବକୁ ସମ୍ଭବ କରିପାରୁଛି । ବିଜ୍ଞାନର ଉନ୍ନତି ଦ୍ୱାରା ଆମର ଓ ଆମ ସାମାଜିକ ଜୀବନର ବହୁ ଉନ୍ନତି ସାଧିତ ହେଉଛି । ଭବିଷ୍ୟତରେ ଆହୁରି ବହୁ ସୁଖ ସୁବିଧାର କଳ୍ପନା କରି ମନୁଷ୍ୟ ସତତ ବିଜ୍ଞାନର ଅନୁଶୀଳନରେ ବ୍ୟାପୃତ ଅଛି ।

ଅନ୍ୟାନ୍ୟ ଦେଶ ତୁଳନାରେ ଆମ ଦେଶର ଶିକ୍ଷା ଅନେକ ପଛରେ ଅଛି । ଅନ୍ୟ ଉନ୍ନତ ଦେଶର ପିଲାମାନେ ବିଜ୍ଞାନ ବିଷୟରେ ଯେଉଁ ବୟସରେ ଯେଉଁସବୁ ବିଷୟମାନ ଶିକ୍ଷା ପାଉଛନ୍ତି ଆମ୍ଭେମାନେ ସେହି ସ୍ତରକୁ ଯିବାପାଇଁ ଢେର ସମୟ ଲାଗିଯାଇ ପାରେ । ତଥାପି ଶିଶୁ ବିଦ୍ୟାଳୟରେ ପ୍ରବେଶ କରିବା ଠାରୁହିଁ ତାକୁ ବିଜ୍ଞାନ ସଂପର୍କରେ କିଛି କିଛି ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଇଛି । ଏହି ଉଦ୍ୟମ ଅବ୍ୟାହତ ରଖାଯାଇ ପାରିଲେ ଆମେ ଆମ ପିଲାମାନଙ୍କୁ ଅନ୍ୟ ଦେଶ ସହିତ ସମକକ୍ଷ କରାଇ ପାରିବାରେ ଅନ୍ତରାୟ ସୃଷ୍ଟି ହେବ ନାହିଁ ।

ଶିକ୍ଷକ ନିଜେ ଉତ୍ତମରୂପେ ତନ୍ନାକରି, ପ୍ରତ୍ୟେକ ଆବଶ୍ୟକ ହେଉଥିବା ଉପକରଣସହ ଚିତ୍ତାକର୍ଷକ ପ୍ରଣାଳୀରେ ବିଜ୍ଞାନ ଶିକ୍ଷାଦାନ ପାଇଁ ପ୍ରସ୍ତୁତ ହୋଇ ଶ୍ରେଣୀକୁ ଆସିବା ଏକାନ୍ତ ପ୍ରୟୋଜନ । ଅନ୍ୟଥା ଶିକ୍ଷାଦାନ ନିଷ୍ଫଳ ହେବ ।

ବିଜ୍ଞାନର ବିଭିନ୍ନ ପରୀକ୍ଷାଗୁଡ଼ିକୁ ପିଲାମାନେ ନିଜେ କରିବାର ସୁଯୋଗ ପାଇଲେ ପ୍ରତ୍ୟକ୍ଷ-ଜ୍ଞାନାର୍ଜନ ସହିତ ପ୍ରଚୁର ଆନନ୍ଦଲାଭ କରିଥାନ୍ତି । ଶିକ୍ଷକ ମହାଶୟ ଏ ସୁଯୋଗରୁ ପିଲାମାନଙ୍କୁ ବଞ୍ଚିତ କରିବେ ନାହିଁ । ବିଭିନ୍ନ ପରୀକ୍ଷା ପ୍ରଦର୍ଶନ ପାଇଁ ଅନେକ ଉପକରଣର ଆବଶ୍ୟକତା ଅଛି । ଏହା କେହି ଅସ୍ୱୀକାର କରିବେ ନାହିଁ । ବର୍ତ୍ତମାନର ସମୁଦାୟ ପାଠ୍ୟ ପୁସ୍ତକ ପାଇଁ ଯେ ଯେ ଏକାନ୍ତ ଅପରିହାର୍ଯ୍ୟ ଉପକରଣର ଆବଶ୍ୟକତା ଅଛି, ଶିକ୍ଷକ ତାର ଏକ ତାଲିକା ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଯଥା ସମ୍ଭବ ଉପକରଣ ଗୁଡ଼ିକ ସଂଗ୍ରହ କରିବା ପାଇଁ ଉଦ୍ୟମ କରିବେ । ଅନେକ ଉପକରଣ ଶିକ୍ଷକ ନିଜେ ପ୍ରସ୍ତୁତ କରି-ପାରିବେ । ଉପକରଣ ନାହିଁ; କପରି ପଢ଼ାହେବ ଏସବୁ କଥା ସହଜରେ କୁହାଯାଇ ପାରେ; ମାତ୍ର ଆମର ଜନମ ପରାମର୍ଶ ଏ ଦେଶର ଶିଶୁହିଁ ଏ ଦେଶର ଭବିଷ୍ୟତ । ସେମାନଙ୍କୁ ଉପଯୁକ୍ତ ମଣିଷ କରି ଗଢ଼ିବାର ଯେଉଁ ଗୁରୁଦାୟିତ୍ୱ ଶିକ୍ଷକ ଗ୍ରହଣ କରିଛନ୍ତି ସେ କଥାଟିକୁ କସ୍ମିନ୍‌କାଳେ ବିସ୍ମୃତ ନହୋଇ ଅଗ୍ରସର ହେବାକୁହିଁ ହେବ । ପ୍ରତ୍ୟେକ ବିଦ୍ୟାଳୟକୁ ବିଜ୍ଞାନ ଉପକରଣରେ ସୁସଜ୍ଜିତ କରିବା ନିକଟ ଭବିଷ୍ୟତରେ ସମ୍ଭବ ନୁହେଁ । ତଥାପି ଆମେମାନଙ୍କୁ ଚେଷ୍ଟା କରିବାକୁ ହେବ ।

———

## ସାପ୍ତାହିକ ୪ପାଠ ବାର୍ଷିକ ୪୦ × ୪ = ୧୬୦ ପାଠ

### ଜୁନ୍ ୧ ସପ୍ତାହ — ୪ପାଠ

୧। ପ୍ରଥମରୁ ଥିବା ଛଅ ଜିନିଷଗୋଟି ଉପରେ ଆଲୋଚନା।
୨। ପୃଥିବୀର ଜନ୍ମ ଓ ଗ୍ରହ ମାନଙ୍କର ଗତି।
୩। ସୌର ଜଗତ।
୪। ଗ୍ରହମାନେ କିପରି ସୂର୍ଯ୍ୟ ଚାରିପଟେ ବୁଲନ୍ତି।

### ଜୁଲାଇ ୪ ସପ୍ତାହ — ୧୬ ପାଠ

୧। କକ୍ଷ, ଅକ୍ଷ, ଆବର୍ତ୍ତନ ଓ ପରିକ୍ରମଣର ଧାରଣା।
୨। ମହାକର୍ଷଣ ଓ ମାଧ୍ୟାକର୍ଷଣ; ଗ୍ରହମାନେ କେଉଁଠୁ ଆଲୋକ ପାଆନ୍ତି।
୩। ଗ୍ରହମାନଙ୍କର ପ୍ରକୃତି ସମ୍ବନ୍ଧରେ ୨ଟି ଜାଣିବା କଥା।
୪। ପୃଥିବୀର ପରିକ୍ରମଣ।
୫ ରୁ ୮। ଋତୁପରିବର୍ତ୍ତନ।
୯। ତୁମେ କଅଣ ଶିଖିଲର ପରୀକ୍ଷା (ପୃଷ୍ଠା୨)
୧୦। ଅନୁଶୀଳନୀ ୧ର ୧ମ ପ୍ରଶ୍ନ।
୧୧। ,, ୧ର ୨ୟ ,,।
୧୨। ,, ୧ର ୩ୟ ,,।
୧୩। ,, ୧ର ୪ର୍ଥ ,,।
୧୪। ,, ୧ର ୫ମ ,,।
୧୫ ଓ ୧୬। ପୃଥିବୀର କକ୍ଷ ଓ ଋତୁପରିବର୍ତ୍ତନର ଚିତ୍ର ବହିରୁ ଦେଖି ନିଜ ଖାତାରେ ଅଙ୍କନ କରିବା।

### ଅଗଷ୍ଟ ୪ ସପ୍ତାହ — ୧୬ ପାଠ

୧। ବାୟୁ, ଜଳ ଓ ତାପ। ସୂର୍ଯ୍ୟଯୋଗୁ ପାଣିପାଗ ବଦଳେ, ଜଳଚକ୍ର।
୨। ପୃଥିବୀ ସୂର୍ଯ୍ୟଠାରୁ ଉତ୍ତାପ ପାଏ।
୩। ଗ୍ରୀଷ୍ମକାଳ ଶୀତକାଳ ଠାରୁ ଅଧିକ ଗରମ।
୪। ଗ୍ରୀଷ୍ମକାଳର ଦିନ ଶୀତକାଳର ଦିନଠାରୁ ବଡ଼।
୫। ଜଳଭାଗ ଅପେକ୍ଷା ସ୍ଥଳଭାଗ ଶୀଘ୍ର ଗରମ ହୁଏ।
୬। ସ୍ଥଳଭାଗ ଶୀଘ୍ର ଶୀତଳ ହୁଏ।
୭। ବାଷ୍ପୀଭବନ।
୮। ଜଳ ବାଷ୍ପ ହେବା କାହାଉପରେ ନିର୍ଭର କରେ ?
୯ ବସ୍ତୁ ଡୁବାଇ, ଜଳର ଉଷ୍ଣତା।
୧୦। ଜଳ ପୃଷ୍ଠର ବିସ୍ତାର।

୧୧ । ବାଷ୍ପରେ ଜଳୀୟ ବାଷ୍ପର ପରିମାଣ ।
୧୨ ଓ ୧୩ । ଜଳୀୟ ବାଷ୍ପ ଶୀତଳ ହେଲେ କଅଣ ହୁଏ ?
(କାକର, କୁହୁଡ଼ି, ବର୍ଷା, କୁଆପଥର, ତୁଷାର)
୧୪ । ମନୁଷ୍ୟ ପ୍ରାଣୀ ଓ ଉଦ୍ଭିଦ ଉପରେ ଋତୁ ପରିବର୍ତ୍ତନର ପ୍ରଭାବ ।
୧୫ । ବାସଗୃହ ।
୧୬ । ପ୍ରାଣୀ ଓ ଉଦ୍ଭିଦର ଜୀବନ ଯାତ୍ରା ।

## ସେପଟେମ୍ବର ୪ ସପ୍ତାହ — ୧୬ ପାଠ

୧ । ଆମେ ଜଳ କେଉଁଠୁ ପାଉ ।
୨ । କେଉଁ ଜଳ ବିଶୁଦ୍ଧ ଓ କେଉଁ ଜଳ ଦୂଷିତ ।
୩ । ଜଳ ଦୂଷିତ ହେବାର କାରଣ ।
୪ । ଦୂଷିତ ଜଳକୁ ବିଶୁଦ୍ଧ କରିବାର ଉପାୟ ।
୫ ଓ ୬ । ପ୍ରାକୃତିକ ଉପାୟରେ ବିଶୁଦ୍ଧ ପିଇବା ପାଣି କିପରି ମିଳେ ?
୭ ରୁ ୯ । 'ତୁମେ କଅଣ ଶିଖିଲ'ର ଆଲୋଚନା ।
୧୦ । ଅନୁଶୀଳନୀର ୧ମ ପ୍ରଶ୍ନ ସମାଧାନ ।
୧୧ । ,, ୨ୟ ,, ,, ।
୧୨ ଓ ୧୩ । ,, ୩ୟ ,, ,, ।
୧୪ । ପର୍ବତ ଓ ନଦୀର ଚିତ୍ର ଅଙ୍କନ ।
୧୫ । ସୂର୍ଯ୍ୟୋଦୟ, ମଧ୍ୟାହ୍ନ ଓ ସୂର୍ଯ୍ୟାସ୍ତର ଚିତ୍ର ଅଙ୍କନ ।
୧୬ । ଗ୍ଲୋବରେ ଶୀତକାଳ ଓ ଗ୍ରୀଷ୍ମକାଳର ଚିତ୍ର ।

## ଅକ୍ଟୋବର ୩ ସପ୍ତାହ — ୧୨ ପାଠ

୧ ଓ ୨ । ମୃତ୍ତିକାକ୍ଷୟ ଓ ସଂରକ୍ଷଣ ।
୩ । ଉପର ମାଟି ଓ ଉପମାଟି ।
୪ । ବର୍ଷା, ନଦୀ, ପଟୁମାଟି ଓ ତ୍ରିକୋଣଭୂମି ।
୫ । ଜୈବିକ ପଦାର୍ଥ କଅଣ ? ହ୍ୟୁମସ୍ ଓ ଉର୍ବରମାଟି ।
୬ । ମାଟିରେ କଅଣ ସବୁ ମିଶିକରି ଥାଏ । (ଧାତବଲବଣ)
୭ । ବିଭିନ୍ନ ପ୍ରକାରର ମାଟି (କାଦୁଆ, ଦୋରସା, ବାଲିଆ ଆଦି)
୮ ଓ ୯ । ମାଟି କ୍ଷୟହୁଏ କିପରି ଓ କ୍ଷୟ ନହେବା ପାଇଁ କଅଣ ସବୁ କରାଯାଏ)
୧୦ । 'କ'ଣ ଶିଖିଲ'ର ଆଲୋଚନା ।
୧୧ ଓ ୧୨ । 'ଅନୁଶୀଳନୀ'ର ୧ମ ଓ ୨ୟ ନମ୍ବର ।

## ନଭେମ୍ବର ୪ ସପ୍ତାହ — ୧୬ ପାଠ

୦ । ବଳ, କାର୍ଯ୍ୟ ଓ ଶକ୍ତି (ଚତୁର୍ଥ ଅଧ୍ୟାୟ) ଆଲୋଚନା ।
୨ । ,, ୧ମ ପରୀକ୍ଷା ଅନୁଶୀଳନ ।
୩ । ,, ୨ୟ ପରୀକ୍ଷା ,, ।
୪ । ,, ୩ୟ ,, ,, ।
୫ । ,, ୪ର୍ଥ ,, ,, ।
୬ । ,, ୫ମ ,, ,, ।
୭ ଓ ୮ । ତାପଶକ୍ତିର ବିଶେଷ ଆଲୋଚନା ।
(କାଠ କୋଇଲା ପେଟ୍ରୋଲ୍, କିରାସିନି)
୯ । 'ସୂର୍ଯ୍ୟ ସବୁ ଶକ୍ତିର ଆଧାର' ଏ ସଂପର୍କରେ ବିଶେଷ ଜ୍ଞାନ ପ୍ରଦାନ ।
୧୦ ଓ ୧୧ । 'ତୁମେ କଣ ଶିଖିଲ'ର ପରୀକ୍ଷା ।
୧୨ ପବନ ଚକି ଓ ପାଣିଚକି ତିଆରି ।
୧୩ । ଅନୁଶୀଳନୀର ୧ମ ପ୍ରଶ୍ନ ସମାଧାନ ।
୧୪ । ,, ୨ୟ ପ୍ରଶ୍ନ ,, ।
୧୫ ଓ ୧୬ । ଲୁହାକଣ୍ଟା ଓ ବ୍ୟାଟେରୀ ସାହାଯ୍ୟରେ ବିଦ୍ୟୁତ୍‌ଚୁମ୍ବକ ତିଆରି କରାଯିବ ।

## ଡିସେମ୍ବର ୩ ସପ୍ତାହ — ୧୨ ପାଠ

୧ । ବସ୍ତୁର ଧର୍ମ (୫ମ ଅଧ୍ୟାୟ)
ବସ୍ତୁ ଓ ପଦାର୍ଥ ମଧ୍ୟରେ ପାର୍ଥକ୍ୟ ।
୨ । ବସ୍ତୁର ରସାୟନିକ ପରିବର୍ତ୍ତନ (ମହମବତୀ ପରୀକ୍ଷା ।
୩ । ବସ୍ତୁର ଭୌତିକ ପରିବର୍ତ୍ତନ (ମହମବତୀ ପରୀକ୍ଷା) ।
୪ । ଦ୍ରବଣ କରଣ (ଲୁଣର ଦ୍ରବଣ ପରୀକ୍ଷା) ।
୫ । ପଟାସ୍ ପରମାଙ୍ଗାନେଟ୍‌ର ଦ୍ରବଣ ପ୍ରସ୍ତୁତ କରଣ ।
୬ । ଅଣୁ ଓ ପରମାଣୁର ଧାରଣା ।
୭ । ଅମ୍ଳଜାନ ଓ ଉଦ୍‌ଜାନ ଗ୍ୟାସ ତିଆରି ପାଇଁ ପରୀକ୍ଷା, ପରମାଣୁ ବୋମାର ଶକ୍ତି ।
୮ ଓ ୯ । (ହିରୋସିମାରେ ପରମାଣୁ ବୋମା ବିସ୍ଫୋରଣର ଭୟଙ୍କରତା ବିଷୟରେ ଆଲୋଚନା)
୧୦ । ଅଣୁ ସଂପର୍କରେ ବିଶେଷ ଆଲୋଚନା, (ତରଳ, କଠିନ ଓ ଗ୍ୟାସୀୟ ପଦାର୍ଥର ଅଣୁ)
୧୧ । 'ଲୁଣର ଅଣୁ ପାଣିରେ କିପରି ମିଶେ' ଏହାର ପରୀକ୍ଷା ।
୧୨ । ପାଣିରେ ମିଳାଇ ଯାଇଥିବା ଲୁଣ ଓ ଚିନିକୁ ପାଣିରୁ ଅଲଗା କରିବା ପାଇଁ ପରୀକ୍ଷା ।

## ଜାନୁଆରୀ ୪ ସପ୍ତାହ — ୧୬ ପାଠ

୧ । ସଂପୃକ୍ତ ଦ୍ରବଣର ଧାରଣା ଓ ପରୀକ୍ଷା ପ୍ରଦର୍ଶନ ।
୨ । ସ୍ଫଟିକ ପ୍ରସ୍ତୁତି ।
୩ । ସ୍ଫଟିକୀକରଣ ପଦ୍ଧତି ସଂପର୍କରେ ଜ୍ଞାନ ପ୍ରଦାନ ।
(ଅଣୁବୀକ୍ଷଣଯନ୍ତ୍ର ଓ ଆତସକାଚ ଧାରଣା)
୪ । ଆତସକାଚ ସାହାଯ୍ୟରେ ବିଭିନ୍ନ ବସ୍ତୁର ଆକାର କିପରି ବଡ଼ ଦେଖାଯାଉଛି ଏହାର ପରୀକ୍ଷା ।
୫ । ଅନ୍ୟ କେତେକ ପଦାର୍ଥରୁ ସ୍ଫଟିକ ତିଆରି (ସୋଡ଼ା, ଲୁଣ, ଗୁଡ଼ ଆଦି)
୬ । ପୁନରାବୃତ୍ତି— (ରସାୟନିକ ଓ ଭୌତିକ ପରିବର୍ତ୍ତନ)
୭ । ,, (ଅଣୁ ଓ ପରମାଣୁ)
୮ । ,, (ଦ୍ରବଣ, ସଂପୃକ୍ତ ଦ୍ରବଣ)
୯ । ,, (ସ୍ଫଟିକ ଓ ସ୍ଫଟିକୀକରଣ)
୧୦ । 'ତୁମେ କ'ଣ ଶିଖିଲ'ର ଆଲୋଚନା ।
୧୧ । 'ଅନୁଶୀଳନୀ'ର ୧ମ ପ୍ରଶ୍ନର ସମାଧାନ ।
୧୨ । ,, ୨ୟ ,, ,, ।
୧୩ ରୁ ୧୬ । 'ତୁମପାଇଁ କାମ'ରେ ଥିବା ୪ ଗୋଟି ପରୀକ୍ଷା କରିବି ।

## ଫେବୃଆରୀ ୪ ସପ୍ତାହ — ୧୬ ପାଠ

୧ । ବେଶପୋଷାକ (୬ଷ୍ଠ ଅଧ୍ୟାୟ)
ଆମେ କ'ଣ ପ୍ରକାର ପୋଷାକ ବ୍ୟବହାର କରୁ କାହିଁକି ?
୨ । କପା ତିଆରି ଲୁଗା ଓ 'ତନ୍ତୁ' ର ଧାରଣା ।
୩ । ରେଶମ ଓ ପଶମର ଧାରଣା, ଏଥିରୁ ପ୍ରସ୍ତୁତ ହେଉଥିବା କପଡ଼ା ।
୪ । କୃତ୍ରିମ ତନ୍ତୁ ନାଇଲନ୍, ଟେରିଲିନ୍, ଟେରିକଟନ୍ )
୫ ରୁ ୧୨ । ତନ୍ତୀର ଲୁଗାବୁଣା ତନ୍ତ ବିଷୟରେ ଆଲୋଚନା ଆମ ଓଡ଼ିଶାରେ ଲୁଗାକଳ ଓ ସୂତାକଳର ଧାରଣା । ତନ୍ତ୍ର ସହିତ ଗାଁ ଗହଳିର ତନ୍ତୀମାନେ ହାତତନ୍ତରେ ବୁଣୁଥିବା ଲୁଗା, ଗାମୁଛା, ସମ୍ବଲପୁରୀ, ବରପାଲି, କୋଟପାଡ଼ ପ୍ରଭୃତିର ହାତବୁଣା କଳାପ; ତନ୍ତୀ ମାନଙ୍କର ଉନ୍ନତି ପାଇଁ ସରକାରୀ ସାହାଯ୍ୟ ଆଦି, ମହାତ୍ମା ଗାନ୍ଧିଙ୍କ ଚରଖା ଆନ୍ଦୋଳନ; ଲୁଗାକଳର ଆବଶ୍ୟକତା, ଆମ ଗଞ୍ଜାମ ଲୁଗା ଓ ସୂତାକଳ ।
୧୩ । ପୋଷାକ ତିଆରି ।
୧୪ ଓ ୧୫ । ପୋଷାକପତ୍ରର ଯତ୍ନ ।
୧୬ । 'ତୁମେ କ'ଣ ଶିଖିଲ'ର ଆଲୋଚନା ।

## ମାର୍ଚ୍ଚ ୩ ସପ୍ତାହ — ୧୨ ପାଠ

୧ । ଅନୁଶୀଳନୀ ( ୪୫ ପୃଷ୍ଠା ) ୨ ଓ ୬ ନମ୍ବରର ଉତ୍ତର ।
୨ । ଚକଟାରେ ସଚାକନ୍ଧାଯିବ ।
୩ । ଚନ୍ଦ୍ରୀ ଘଉକୁ ପାନ୍ ଲୁଗାକୁଣ୍ଡାର ପର୍ଯ୍ୟବେକ୍ଷଣ ।
୪ । ଲୁଗାର ଦାଗ ଛଡାଇବା ପରୀକ୍ଷା କରାଯିବ ।
୫ ଓ ୬ । ଗାଛଜଗତ ( ସପ୍ତମ ଅଧ୍ୟାୟ ) ।
ଖାତାରେ ଧାନ, ଗହମ, କଦଳୀ, ବାଇଗଣ ଗଛର ଚିତ୍ରାଙ୍କନ ।
୭ ଓ ୮ । ( ଆମେ ଆମର ଖାଦ୍ୟପାଇଁ ଗଛମାନଙ୍କ ଉପରେ ନିର୍ଭର କରୁ )
ଘାସ ଜାତୀୟ ଗଛରୁ ଖାଦ୍ୟ ।
୯ ଓ ୧୦ । ମନୁଷ୍ୟ ଦୈର୍ଘ୍ୟରେ ଉଦ୍ଭିଦ, ପ୍ରାଣୀ ।
୧୧ । ଗଛର ବିଭିନ୍ନ ଅଂଶ ।
୧୨ । ହରଗୌରୀ ଗଛ ଓ ନାଲିରଙ୍ଗ ମିଶା ପାଣିରେ ଚେରର କାର୍ଯ୍ୟ ପରୀକ୍ଷା ।

## ଏପ୍ରିଲ ୪ ସପ୍ତାହ — ୧୬ ପାଠ

୧ ଓ ୨ । ବୀଜ ବିକ୍ଷେପ ।
୩ । ପ୍ରାଣୀ ଓ ଉଦ୍ଭିଦ ମାନଙ୍କର ଯତ୍ନ ।
୪ । 'ତୁମେ କଣ ଶିଖିଲ'ର ଆଲୋଚନା ।
୫ । ଅନୁଶୀଳନୀର ସମାଧାନ ।
୬ । ମାନବ ଶରୀର (୮ମ ଅଧ୍ୟାୟ) ।
ଏହି ଅଧ୍ୟାୟର ପ୍ରଥମରେ ଥିବା ଚିତ୍ରଗୁଡ଼ିକୁ ବିଜ୍ଞାନ ଖାତାରେ ଅଙ୍କନ ।
୭ । ମାନବ ଶରୀରର ବିଭିନ୍ନ ଭାଗ ଓ ମାନବ ଶରୀର ଏକଟା ଉକ୍ଷା ।
୮ । ଚର୍ମ ଓ ଜିଭର କାମ ।
୯ । କାନ, ଆଖି ଓ ନାକର କାମ ।
୧୦ ରୁ ୧୨ । ରକ୍ତ ସଞ୍ଚାଳନ ଓ ଶ୍ୱାସକ୍ରିୟା ।
୧୩ । ଫୁସଫୁସର ଚିତ୍ରାଙ୍କନ ।
୧୪ । ବିଭିନ୍ନ ପ୍ରକାର ଖାଦ୍ୟର ଗୁଣ ।
୧୫ । ଖାଦ୍ୟ ସଂରକ୍ଷଣ ।
୧୬ । ଖାଦ୍ୟର ହଜମ କ୍ରିୟା ।

## ମଇ ୨ ସପ୍ତାହ — ୮ ପାଠ

୧ । ଉତ୍ତେଜକ ପାନୀୟ ଓ ମାଦକ ଦ୍ରବ୍ୟର କୁପରିଣାମ ଓ ଖାଦ୍ୟରେ ମିତବ୍ୟୟିତା ।
୨ । ତୁମେ କଅଣ ଶିଖିଲର ଆଲୋଚନା ।

୩ ।   ଅନୁଶୀଳନୀର ଉତ୍ତର ।
୪ ।   ସୌର ଜଗତ, କକ୍ଷ, ଅକ୍ଷ, ମାଧ୍ୟାକର୍ଷଣ, ମହାକର୍ଷଣ, ପରିକ୍ରମଣ, ମେରୁଦଣ୍ଡ ।
୫ ।   ଜଳଚକ୍ର, ବିଭିନ୍ନ ପ୍ରକାରର ମାଟି ବ୍ୟବସାୟିକ ଓ ଭୌତିକ ପରିବର୍ତ୍ତନ ।
୬ ।   ଦ୍ରବଣ, ପରିପୃକ୍ତଦ୍ରବଣ, ସ୍ଫଟିକୀକରଣ, ଅଧଃକ୍ଷେପ, ସ୍ନାୟୁ ।
୭ ।   କର୍ଣ୍ଣପଟହ, ଜ୍ଞାନେନ୍ଦ୍ରିୟ, ଖାଦ୍ୟଶୃଙ୍ଖଳ, ବୃହଦନ୍ତ୍ର ।
୮ ।   ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଧାତୁସାର ଓ ଜୀବସାର ।

ଦ୍ରଷ୍ଟବ୍ୟ:— ଏହି ମାସର ୪ର୍ଥ ପାଠରୁ ୮ମ ପାଠ ପର୍ଯ୍ୟନ୍ତ ମୋଟ ୫ ଗୋଟି ପାଠରେ ସମୁଦାୟ ବିଜ୍ଞାନ ବିଷୟ ପୁନରାଲୋଚନା କରାଯାଇଛି । ଅଧ୍ୟାୟ ମାନଙ୍କରେ ଯେଉଁ ବୈଜ୍ଞାନିକ ଶବ୍ଦଗୁଡ଼ିକ ଅଛି, ସେ ଗୁଡ଼ିକୁ ଆଲୋଚନା କରି ଦେଲେ ପ୍ରାୟ ସମୁଦାୟ ପୁସ୍ତକଟିର ପୁନରାଲୋଚନା ହୋଇ ପାରିବ । ଯଦି କୌଣସି ବିଦ୍ୟାଳୟରେ ଅଧିକ ଅଗ୍ରଗତି ହୋଇ ଏପ୍ରିଲ ମାସ ଅଧାରେ ପୁସ୍ତକଟିକୁ ଶେଷ କରାଯାଇ ପାରିବ ତେବେ ଏପ୍ରିଲରୁ ୮ପାଠ ଓ ମଇର ୮ପାଠ ଏପରି ୧୬ ପାଠ ପୁନରାଲୋଚନା ପାଇଁ ରଖିହେବ । ବିଷୟ ଗୁଡ଼ିକର ଗୁରୁତ୍ୱ ବିଚାର କରି ପାଠଦାନ କରାଯିବା ଉଚିତ ।

ବହିରେଥିବା ବିଜ୍ଞାନ ସମ୍ବନ୍ଧୀୟ ଚିତ୍ର ଗୁଡ଼ିକ ନିଜ ବିଜ୍ଞାନ ଖାତାରେ କରିବା ପାଇଁ ପିଲାମାନଙ୍କୁ ନିର୍ଦ୍ଦେଶ ଦିଆଯିବ । ଏହିସବୁ ଚିତ୍ରରୁ ଅନେକ ଚିତ୍ରାଙ୍କନ ସମୟରେ କରାଯିବାରେ ବାଧାନାହିଁ । ଶିକ୍ଷକ ବିଚାର କରି ବ୍ୟବସ୍ଥା କରିବାକୁ ଅନୁରୋଧ ।



# ଶାରୀରିକ ଶିକ୍ଷା - (ଖେଳ, ଡ୍ରିଲ୍, ଆସନ ଆଦି)

( ଶାରୀରିକ ଶିକ୍ଷା ପାଇଁ ସର୍ବମୋଟ ୪୦ × ୫ = ୨୦୦ ପିରିଅଡ଼ ରଖାଯାଇଛି )

କେବଳ ଖେଳପାଇଁ ସାପ୍ତାହିକ ୩ ପିରିଅଡ ହିସାବରେ ବର୍ଷକୁ ୪୦ × ୩ = ୧୨୦ ପିରିଅଡ଼, ଡ୍ରିଲ୍ ପାଇଁ ଏକ ପିରିଅଡ ଓ ସହଜ ଆସନ ଅଭ୍ୟାସ ପାଇଁ ଆଉ ଗୋଟିଏ ପିରିଅଡର ବ୍ୟବସ୍ଥା ଅଛି । ସାଧାରଣତଃ ପିଲମାନେ କ୍ରୀଡ଼ାପ୍ରିୟ । ଅଧିକାଂଶ ସମୟ ଖେଳରେ କଟାଇବା ଶିଶୁମାନଙ୍କର ଏକ ପ୍ରବୃତ୍ତି । ଖେଳ ପିଲମାନଙ୍କୁ ସ୍କୁଲ ପ୍ରତି ଆକୃଷ୍ଟ କରେ । ଫଳରେ ବିଦ୍ୟାଳୟର ନିୟମିତ ଉପସ୍ଥାନ ବୃଦ୍ଧି ହୁଏ । ଏଣୁ ନାଚ, ଗୀତ, ଖେଳ ଆଦିକୁ ବିଦ୍ୟାଳୟର ପାଠ୍ୟକ୍ରମରେ ସ୍ଥାନଦେବା ଏକ ସୁନ୍ଦର ବ୍ୟବସ୍ଥା । ଏହାକୁ ଯଥା ଭାବରେ କାର୍ଯ୍ୟକାରୀ କରାଇପାରିଲେ ଶିକ୍ଷକଙ୍କ ଶ୍ରମ ସାର୍ଥକ ହେବ ।

ରାଜ୍ୟର ବିଭିନ୍ନ ପ୍ରାନ୍ତରେ ବିଭିନ୍ନ ପ୍ରକାର ଖେଳର ପ୍ରଚଳନ ଅଛି । ଆଦର୍ଶ ପାଇଁ କେତେକ ଖେଳର ନାମ ଉଲ୍ଲେଖ କରାଯାଇଛି ମାତ୍ର ଶିକ୍ଷକମାନେ ସେମାନଙ୍କ ଇଚ୍ଛାନୁସାରେ ଭିନ୍ନ ଖେଳର ବ୍ୟବସ୍ଥା କରିପାରନ୍ତି, ମାତ୍ର ପୁରପୂର ଖେଳକୁ ବାଦ ଦେଇ ସବୁବେଳେ ପାଠ ପଢାଇଲେ ସୁଫଳ ମିଳେନାହିଁ ।

## କେତେକ ଖେଳ

ଲୁଚକାଳି; ବୋହୂଚୋରି, ଡୁ ଡୁ, ରୁମାଲ ଚୋରି, ବାଘ ଛେଳି, କବାଡ଼ି, ରାମ-ରାବଣ, ମଷାବରଡ଼, ଲୁହାବ୍ରେକ୍, ପିନ୍ଦ୍ରି ବୋହୋପା, ଅଣ୍ଟାଦୌଡ଼, ତିନିଗୋଡ଼ିଆ, କୁକୁଡ଼ା ଲଢ଼େଇ, କବଫଗୁଳ, ବଲ୍ ଷୋଳଷି, ଝୁ ଝୁ, ଅନ୍ଧୁକୁମଚ, ଛୁଞ୍ଚିସୂତା ଦୌଡ଼, ମେଜିକ୍ ଚେୟାର, ନମ୍ବର ଚେଞ୍ଜ, [illegible] ପାଣ୍ଡୁ ବଦଳ, ବେଙ୍ଗଡିଆଁ, ଶଙ୍କ୍ ବଲ୍, ଗଣିତ ଦୌଡ଼, ଶବ୍ଦଧନ୍ଦା ଖେଳ, ଲମ୍ବାଡ଼ିଆଁ; ଉଚ୍ଚଡିଆଁ; କଳାଧଳ; ଦଉଡ଼ି ଡିଆଁ ପୁଣ ଆଦି ।

ଗୋଟିଏ ଖେଳକୁ କ୍ରମାଗତ ନଖେଳାଇ ଭିନ୍ନ ଭିନ୍ନ ଖେଳ ଖେଳାଇବା ଉଚିତ ।



# ଡ୍ରିଲ୍ ଓ ଦେଶୀ କସରତ୍

ସାପ୍ତାହିକ ଏକ ପିରିଅଡ୍ ହିସାବରେ ବର୍ଷକୁ ୪୦ ପିରିଅଡ୍ ଡ୍ରିଲର ବ୍ୟବସ୍ଥା କରାଯାଇଛି । ଏହି ଡ୍ରିଲ୍ ପିରିଅଡ୍ଟି ଶନିବାର ଦିନ ପ୍ରଥମ ପିରିଅଡରେ କରାଯିବା ଭଲ ।

ଏଥିମଧ୍ୟେ କେତେଗୁଡ଼ିଏ ଡ୍ରିଲ୍ର ସୂଚନା ମାତ୍ର ପ୍ରଦତ୍ତ ହୋଇଛି । ବର୍ଷ ମଧ୍ୟରେ ଏ ଗୁଡ଼ିକ ଯଥାର୍ଥ ଭାବରେ କାର୍ଯ୍ୟକାରୀ ହେବା ବିଧେୟ । ଏହାଛଡ଼ା ଆଉ ଅନେକ ପ୍ରକାର ସହଜ ଡ୍ରିଲ୍ ମଧ୍ୟ ଅଛି । ପାରିଲେ ଶିକ୍ଷକ ସେ ସବୁକୁ ଶିଖାଦେବା ଉଚିତ ।

ସୂଚନା: –

୧ । ସିଧା ଧାଡ଼ିରେ ଠିଆ ହେବା ।
୨ । ଉଚ୍ଚତା କ୍ରମରେ ଧାଡ଼ି କରିବା ।
୩ । ପ୍ରଥମରୁ ଶେଷ ପିଲା ପର୍ଯ୍ୟନ୍ତ କ୍ରମିକ ନମ୍ବର ଗଣିବା ।
୪ । ଏକ, ଦୁଇ କ୍ରମରେ ଗଣିବା ଓ ଦୁଇ ଧାଡ଼ି କରିବା ।
୫ । ଏକ, ଦୁଇ ତିନି କ୍ରମରେ ଗଣିବା ଓ ୩ ଧାଡ଼ି କରିବା ।
୬ । ,, ,, ,, ଚାରି କ୍ରମରେ ଗଣିବା ଓ ୪ ଧାଡ଼ି କରିବା ।
୭ । ସଙ୍କେତ ପାଇ ଧାଡ଼ିରୁ କେତେ ପାଦ ଆଗକୁ ବା ପଛକୁ ଯିବା ।
୮ । ଧାଡ଼ିରେ ଠିଆ ହୋଇ ଦୁଇ ଆଡ଼କୁ ଦୁଇ ହାତରେ ପ୍ରସାର ।
୯ । ,, ,, ହାତ ମୁଣ୍ଡ ଉପରକୁ, ସାମ୍ନାକୁ, ଦୁଇକଡ଼କୁ ପ୍ରସାରିତ କରିବା ।
୧୦ । ଉପରକ୍ରମ ସହିତ ହାତ ଉପରକୁ ନେଇ ତାଳି ଦେବା ।
୧୧ । ,, ଜଙ୍ଘରେ ତାଳି ଦେବା ।
୧୨ । ଆଗକୁ ନଇଁ ବାମ ହାତରେ ଡାହାଣ ଓ ଡାହାଣ ହାତରେ ବାମ ପାଦକୁ ଛୁଇଁବା ।
୧୩ । କ୍ରମାନୁସାରେ ଆଗକୁ ପଛକୁ ଡେଇଁବା ।
୧୪ । ଗୋଟିଏ ଗୋଡ଼ରେ ଛିଡ଼ା ହୋଇ ଆଗକୁ ପଛକୁ ଡେଇଁବା ।
୧୫ । ଦୌଡ଼ିବା ।
୧୬ । ବୃତ୍ତ ଗଠନ କରିବା ଓ ହାତ ଧରାଧରି ହୋଇ ବୁଲିବା ।
୧୭ । ବୃତ୍ତରେ ରହି ଦୁଇହାତ ଉପରକୁ ଟେକି ବୁଲିବା ।
୧୮ । ,, ହାତ ଦୁଇଆଡ଼କୁ ପ୍ରସାରିତ କରି ବୁଲିବା
୧୯ । ,, ଗୋଟିଏ ଗୋଡ଼ ଟେକି ଗୋଡ଼ତଳେ ତାଳି ଦେବା ।
୨ । ଗୋଇଠିରେ ଠିଆ ହୋଇ ଆଗକୁ ପଛକୁ ଓ ବାମ ଦକ୍ଷିଣକୁ ନଇଁବା ।
୨୧ । ଦୁଇଧାଡ଼ି ସାମନା ସାମନି ଠିଆହୋଇ ପ୍ରତି ଧାଡ଼ିରୁ ଜଣେ ଅନ୍ୟ ଧାଡ଼ିରୁ ଜଣେ ପିଲାର ହାତଧରି ଟାଣିବା ଓ ପଛକୁ ଠେଲିବା ।
୨୨ । ଗୋଟିଏ ଗୋଡ଼ରେ ଠିଆ ହୋଇ ଅନ୍ୟଗୋଡ଼ ଆଗକୁ ବଢ଼ାଇବା ।

୨୨ । ଆଙ୍ଗୁଠିରେ ଘର ଭଷ୍ଣ ଗୋଟିଏ ଗୋଡ଼ଙ୍କ ଆଗକୁ ପଛକୁ ଡେଇଁବା, କଡ଼କୁ ଡେଇଁବା ।
୨୪ । ଘାବର ତାଳ ଦେଇ ବୁଲିବା (ମାର୍ଚ୍ଚିଂ)
୨୫ । ଅଣ୍ଟାରେ ଦୁଇହାତ ଦେଇ ଆଗକୁ ପଛକୁ ନଇଁବା
୨୬ । ,, ପାଦ ମଧ୍ୟରେ ଫାଙ୍କ ରଖି ଡ଼େଇଁବା ।
୨୭ । ଅଣ୍ଟାରେ ହାତରଖି ପର୍ଯ୍ୟାୟ କ୍ରମେ ବାମ ଡ଼ାହାଣ ପାଦ ଉଠାଇବା ।
୨୮ । ଦଣ୍ଡ ।
୨୯ । ସାବାବୈଠକ ।
୩୦ । କୁଦ୍ ବୈଠକ ।
୩୧ । ଚକ୍ରକୁବ ବୈଠକ ।
୩୨ । ଧାଡ଼ରେ ରହି ନଇଁ ନଇଁ ଆଗକୁ ବୁଲିବା ।
୩୩ । ଆଦେଶ ସାବଧାନ ।
୩୪ । ଧାଡ଼ବନାଓ ।
୩୫ । ଦୋ, ତିନ୍, ଚାର୍, ତକ ଗିନ୍ତି ।
୩୬ । ଶ୍ଳେଷ୍ଟା କଦମ୍ ।
୩୭ । କଡ଼ା କଦମ୍ ।
୩୮ । ଧୀରେ କଦମ୍ ଚାଲ ।
୩୯ । ତେଜ୍ କଦମ୍ ଚାଲ ।
୪୦ । ଆଗେବଢ଼୍ ।
୪୧ । ପିଛେ ଘୁର୍ ।
୪୨ । ଡ଼ାହିନେ ଘୁର୍ ।
୪୩ । ବାଏଁ ଘୁର୍ ।
୪୪ । ଖୁଲି ଲାଇନ୍ ଚଲ୍ ।
୪୫ । ଆରାମ୍ କର୍ ।



# ସହଜ ଆସନ ଶିକ୍ଷା

ଅତି ପ୍ରାଚୀନ କାଳରୁ ଆମ ଦେଶରେ 'ଆସନ'ର ପ୍ରଚଳନ ଥିଲା, ଏବେ ମଧ୍ୟ ଅଛି । ଆମର ମୁନିଋଷିମାନେ ନିୟମିତ ଆସନ ଅଭ୍ୟାସ ଓ ଆଉ କେତେକ ନିୟମ ପାଳନ କରି ନିରୋଗ ରହିବା ସଙ୍ଗେ ସଙ୍ଗେ ଶହ ଶହ ବର୍ଷ ବଞ୍ଚୁଥିଲେ । ଅସାଧ୍ୟ ସାଧନ ମଧ୍ୟ କରି ପାରୁଥିଲେ । ବଞ୍ଚିଥିବା ଯାଏ ସୁସ୍ଥ, ସବଳ କାର୍ଯ୍ୟକ୍ଷମ ଜୀବନଯାପନ କରୁଥିଲେ । ପରୀକ୍ଷାରୁ ଜଣାଯାଇଛି ଯେ 'ଆସନ' ଅଭ୍ୟାସ ଦ୍ୱାରା ଅନେକ କଠିନ ରୋଗ ବିନା ଔଷଧରେ ଆଶ୍ଚର୍ଯ୍ୟ ଭାବରେ ଭଲ ହୋଇ ଯାଉଛି । ଏଥିପାଇଁ ପଇସାଟିଏ ମଧ୍ୟ ଖର୍ଚ୍ଚ କରିବାକୁ ପଡୁନାହିଁ । ପ୍ରାଚୀନ କାଳର ସେହି 'ଆସନ' ବର୍ତ୍ତମାନ ବେଶ୍ ଆଦର ଲାଭ କଲାଣି ।

ଆଜିର ଶିଶୁ ଦେଶର ଭବିଷ୍ୟତ ଭାଗ୍ୟବିଧାତା । ସେହି ଶିଶୁ ସୁସ୍ଥ, ସବଳ; ନିରୋଗ ଓ ଦୀର୍ଘଜୀବୀ ହେବା ସମସ୍ତଙ୍କର କାମନା ହେବା ଉଚିତ । ଶିକ୍ଷକ ବନ୍ଧୁମାନେ ଏ ଦିଗରେ କିଛି ସହାୟତା କରିବା ପାଇଁ ଆମର ବିନମ୍ର ନିବେଦନ । ଏହା ବର୍ତ୍ତମାନ ବାଧ୍ୟତା ମୂଳକ ନୁହେଁ । ସମୟ ଆସିବ ଯେତେବେଳେ ଏହା ବାଧ୍ୟତା ମୂଳକ ଭାବରେ ବିଦ୍ୟାଳୟ ମାନଙ୍କରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହେବ । ଅନେକ ବିଶିଷ୍ଟ ଶିକ୍ଷାବିତ୍ ପ୍ରାଥମିକ ବିଦ୍ୟାଳୟରୁ ଆସନ ଅଭ୍ୟାସ କରିବା ପାଇଁ ମତ ଦେଇଛନ୍ତି । ଆମ୍ଭେମାନେ ମଧ୍ୟ ସେଥିରେ ସମ୍ପୂର୍ଣ୍ଣ ଏକମତ; ମାତ୍ର କେଉଁ କେଉଁ ଆସନ ପିଲାମାନେ କରିପାରିବେ ତାହା ସ୍ଥିର କରିବା ଉଚିତ । ଆସନ ବହୁ ପ୍ରକାରର ଅନେକ ଆସନ ଅଭ୍ୟାସ କରିବା ଏକାନ୍ତ ଆୟାସ ସାଧ୍ୟ । ତେଣୁ ଅଳ୍ପ ଅଭ୍ୟାସରେ ଯେଉଁ କେତୋଟି ଆସନ କରାଯାଇ ପାରିବ; ତା'ର ଏକ ତାଲିକା ତଳେ ଦିଆଗଲା । ଶିକ୍ଷକ ନିଜେ ଜାଣିଥିଲେ ଭଲ । ନଜାଣିଥିଲେ ଆସନ ଶିକ୍ଷା ପୁସ୍ତକର ସାହାଯ୍ୟ ନେଇ ଏହାକୁ କାର୍ଯ୍ୟକାରୀ କରାଇବାକୁ ଅନୁରୋଧ ।

**ଆସନର ନାମ:** — ପଦ୍ମାସନ, ବଦ୍ଧପଦ୍ମାସନ,, ସିଦ୍ଧାସନ, ସୁଖାସନ, ଭୁଜଙ୍ଗାସନ, ଚକ୍ରାସନ, ଗର୍ଭାସନ, ଏକପାଦାସନ, ଗୋମୁଖାସନ, ମତ୍ସ୍ୟାସନ, ମୟୂରାସନ, ଗରୁଡ଼ାସନ, ଧନୁରାସନ, କୁକ୍କୁଟାସନ, ଶଲଭାସନ, ହଳାସନ, ଭଦ୍ରାସନ, ଉତ୍କଟାସନ, ସିଂହାସନ, ବୀରାସନ, ପର୍ବତାସନ ।



# ଚିତ୍ରାଙ୍କନ

ସାପ୍ତାହିକ ୨ ପିରିଅଡ଼ ହିସାବରେ ବର୍ଷକୁ ୮୦ ପିରିଅଡ଼ ଚିତ୍ରାଙ୍କନରେ ବ୍ୟୟିତ ହେବ । ଏଥିରୁ ଗୋଟିଏ ପିରିଅଡ଼ରେ ପିଲାମାନେ ଚିତ୍ରଅଙ୍କନ କରିବେ ଓ ଅନ୍ୟ ପିରିଅଡ଼ରେ ଅଙ୍କିତ ଚିତ୍ର ସଂଶୋଧିତ ହେବ । ତେଣୁ ବର୍ଷ ମଧ୍ୟରେ ସ୍ଥୂଳତଃ ୪୦ ଗୋଟି ଚିତ୍ର ହୋଇ ପାରିବ । ଛାତ୍ରସଂଖ୍ୟା ଦୃଷ୍ଟିରୁ ଏହି ଚିତ୍ରାଙ୍କନର ପରିମାଣ ଊଣା ଅଧିକ ହୋଇପାରେ । ତେବେ ୩୬ ରୁ ୪୦ ଗୋଟି ପର୍ଯ୍ୟନ୍ତ ଚିତ୍ର ଅଙ୍କନ ପାଇଁ ଶିକ୍ଷକ ଯତ୍ନବାନ ହେବେ ।

ସୂଚନା:—

(କ) ନିଜ କଳ୍ପନାକୁ ଚିତ୍ରରେ ରୂପ ଦେବାପାଇଁ ଉତ୍ସାହିତ କରାଯିବ ।

(ଖ) ବିଭିନ୍ନ ପ୍ରାକୃତିକ ଦୃଶ୍ୟ ପ୍ରତି ଆକୃଷ୍ଟ ହୋଇ ତାହାର ଚିତ୍ରାଙ୍କନ ।

(ଗ) ମନରୁ ଖାଳି ଯେ କୌଣସି ଚିତ୍ରାଙ୍କନ କରିବାକୁ ଉତ୍ସାହ ପ୍ରଦାନ ।

(ଘ) ବିଭିନ୍ନ ପ୍ରାଣୀର ରେଖା ଚିତ୍ର ।

(ଙ) ପତ୍ରିକା, ସମ୍ବାଦପତ୍ରରୁ ବିଭିନ୍ନ ସହଜ ଚିତ୍ରର ଅଙ୍କନ ।

(ଚ) ଛପା ନିମନ୍ତ୍ରଣ ପତ୍ରର ଉପର ଚିତ୍ରକୁ ଦେଖି ସେପରି ଅଙ୍କନ

(ଛ) ବାହାରେ ମିଳାଯାଇଥିବା ବିଭିନ୍ନ ଛବିରୁ ସାହା କରାଯାଇ ପାରିବ ।

(ଜ) ଶିକ୍ଷକ ସଂଶୋଧନ ନକରି ମନମୁତାବକ ସ୍ୱାଧୀନ ଚିତ୍ରାଙ୍କନ ।

(ଝ) ବିଭିନ୍ନ ଚିତ୍ରକୁ ମୌଳିକ ରଙ୍ଗରେ ରଙ୍ଗାଇବା ।

(ଞ) ପାଠ୍ୟପୁସ୍ତକ ବା ଅନ୍ୟ କୌଣସି ପୁସ୍ତକରୁ ଦେଖି ଚିତ୍ରାଙ୍କନ ।

(ଟ) ସହଜ ଷ୍ଟୋଟି ଚିତ୍ର ।

(ଠ) ଅଳଂକୃତ ଚିତ୍ର ଅଙ୍କନ ପାଇଁ ଅଧିକ ଦୃଷ୍ଟି ପ୍ରଦାନ କରାଯିବା

## ଜୁନ ୧ ସପ୍ତାହ — ୨ ପାଠ

୧ । ସ୍କୁଲ ନାମକୁ ଅଳଂକୃତ ଅକ୍ଷରରେ ଲେଖିବା ।
୨ । ଦେଢ଼ ବୃତ୍ତ ମଧ୍ୟରେ ସ୍କୁଲର ନାମ ଓ ତଳେ ନିଜ ନାମକୁ ଅଳଂକୃତ ଅକ୍ଷରରେ ଲେଖିବା ।

## ଜୁଲାଇ ୪ ସପ୍ତାହ — ୮ ପାଠ

୧ । ଦୁଇଟି ପତ୍ରଥାଇ ଅମ୍ବ ଡାଳ ।
୨ । କାଇଞ୍ଚଣର ଡାଳ ।
୩ । ପତାକା ।
୪ । ଡାଳସହ କୌମୁଦୀ ଫୁଲ ।

## ଅଗଷ୍ଟ ୪ ସପ୍ତାହ — ୮ ପାଠ

୧ । ବୃତ୍ତ ମଧ୍ୟରେ ଭେଣ୍ଡି ସଜାଇବା ।
୨ । କୋଳପ ଓ କଞ୍ଚି ।
୩ । କାଳଗଣ୍ଡ ।
୪ । ଅସ୍ତ ହେଉଥିବା ସୂର୍ଯ୍ୟ ।

## ସେପ୍‌ଟେମ୍ବର ୪ ସପ୍ତାହ — ୮ ପଠ

୧ । ପାଣିକଖାରୁ ।
୧ । ଅମୃତଭଣ୍ଡା ।
୩ । କଦଳୀ ଗଛ ।
୪ । ଯୋଚା ।

## ଅକ୍‌ଟୋବର ୩ ସପ୍ତାହ — ୬ ପାଠ

୧ । ସାପର ଡାଳ ।
୨ । ଖୋଳଛଡା ।
୩ । ଲୁଗାଧଡ଼ ।

## ନଭେମ୍ବର ୪ ସପ୍ତାହ — ୮ ପାଠ

୧ । ସ୍କୁଲଡ଼ରୁ ଅଙ୍କନ ।
୨ । ବାଲ୍‌ଟି ।

୩ । କପ୍ ପ୍ଲେଟ୍ ।

୪ । ଓଡ଼ମ ଗଛରେ କେଣ୍ଡା ।

## ଡ଼ିସେମ୍ବର ୩ସପ୍ତାହ — ୭ ପାଠ

୧ । ଟଙ୍କା, ପଚିଶ ପଇସି ଓ ଦଶପଇସିର ଛବି ।

୨ । ପାହାଡ଼ ଉହାଡ଼ରୁ ସୂର୍ଯ୍ୟୋଦୟ ।

୩ । ଜାଲସହ ଡଙ୍ଗା ।

## ଯାନୁଆରୀ ୪ ସପ୍ତାହ — ୮ ପାଠ

୧ । ଗୋଟିଏ ଖୋଷ୍ଟିର ଛବି ।

୨ । ଅଳଂକୃତ ଲୁଗାଧଡ଼ି ।

୩ । ପୂର୍ଣ୍ଣକୁମ୍ଭର ଚିତ୍ର ।

୪ । ମାଛର ଚିତ୍ର ।

## ଫେବୃଆରୀ ୪ ସପ୍ତାହ — ୮ ପାଠ

୧ । ମନ୍ଦିରର ରେଖାଚିତ୍ର ।

୨ । ଚଡ଼ାବନ୍ଧୁକୁ ଦେଖି କୌଣସି ଚିତ୍ରାଙ୍କନ ।

୩ । ଷାଣ୍ଢର ଚିତ୍ର ।

୪ । ପ୍ରଜାପତି ।

## ମାର୍ଚ୍ଚ ୩ ସପ୍ତାହ — ୭ ପାଠ

୧ । ପୋଖରୀ ମଝିରେ ପଦ୍ମଫୁଲ ।

୨ । ଜଙ୍ଗଲ ଓ ମୟୂର ଚିତ୍ର ।

୩ । ପୋଷ୍ଟବକ୍ସର ଚିତ୍ର ।

## ଏପ୍ରିଲ ୪ ସପ୍ତାହ — ୮ ପାଠ

୧ । ଉଡ଼ାଜାହାଜର ଚିତ୍ର ।

୨ । ଦ୍ୱାର ଝରକାସହ ଘରର ଚିତ୍ର ।

୩ । କରଯାଇଥିବା ଚିତ୍ରରେ ରଙ୍ଗ ଦେବା ।

୪ । ମନରୁ କୌଣସି ଚିତ୍ରାଙ୍କନ ।

## ମଇ ୨ ସପ୍ତାହ — ୪ ପାଠ

୧ । ଫାଉଣ୍ଟେନ୍ ପେନ୍‌ର ଚିତ୍ର ।
୨ । ଚିହ୍ନିତ ରୁମାଲର ଚିତ୍ର ।



ଆବଶ୍ୟକ ମନେକଲେ ଶିକ୍ଷକ ନିମ୍ନଲିଖିତ ବିଷୟ ଗୁଡ଼ିକର ଚିତ୍ରାଙ୍କନ କରାଇ ପାରନ୍ତି ।

ଚିହ୍ନିତ ମାଠିଆ, ସୁଟକେଶ, ଫୁଲଦାନି, ଗ୍ଲାସ, ବିଭିନ୍ନ ଡିଜାଇନ୍‌ର ଲୁଗାଧଡ଼ି, ବିଭିନ୍ନ ଝୋଟିଚିତ୍ର, କୁକୁର, ବିରାଡ଼ି, ହେନ ଓ ଗାଈର ଚିତ୍ର, ଗୁଆକାତି, ମୁଦାପେଟା, ବରପତ୍ର, ଅଶ୍ୱତ୍ଥପତ୍ର, ବର୍ଗକ୍ଷେତ୍ର, ଆୟତକ୍ଷେତ୍ର ବା ତ୍ରିଭୁଜ ମଧ୍ୟରେ ଫୁଲ, ଫଳ ସଜାଇବା, ସାମାଜିକପାଠ, ଇଂରାଜୀ ଆଦି ପୁସ୍ତକରୁ ଯେଉଁସବୁ ଚିତ୍ର କରାଯାଇ ପାରିବ । ଖବର କାଗଜରୁ ପତ୍ରପତ୍ରିକାରୁ ଦେଖି ସେହିପରି ଚିତ୍ର ଅଙ୍କନ କରିବା ପାଇଁ ବ୍ୟବସ୍ଥା କରାଯାଇ ପାରେ । ଚିତ୍ରାଙ୍କନ ପାଇଁ ବିଭିନ୍ନ 'ଡ୍ରଇଂ ପୁସ୍ତକ' ବିଦ୍ୟାଳୟରେ ଆଦର୍ଶରୂପେ ରହିବା ବାଞ୍ଛନୀୟ ।

ପିଲାମାନଙ୍କୁ ଚିତ୍ର ଗୁଡ଼ିକରୁ କେତେକରେ ରଙ୍ଗଦେବା ପାଇଁ ଉତ୍ସାହିତ କରାଯିବ । କେଉଁ ଚିତ୍ରରେ କେଉଁ ମୌଳିକ ରଙ୍ଗ ଦିଆଯିବ ତାହା ଶିକ୍ଷକ ଛାତ୍ରଛାତ୍ରୀମାନଙ୍କୁ ଜଣାଇ ଦେବେ ।

ଡ୍ରଇଂ ଖାତା ଗୁଡ଼ିକ ବିଦ୍ୟାଳୟରେ ରକ୍ଷିତ ହେବ ଓ ଆବଶ୍ୟକ ସମୟରେ ପିଲାମାନେ ଚିତ୍ରାଙ୍କନ କରି ଶିକ୍ଷକଙ୍କ ନିକଟରେ ଖାତାଗୁଡ଼ି ରଖିଦେବେ ।



# ଉଦ୍ୟାନକର୍ମ

ବଗିଚା ବିଦ୍ୟାଳୟର ଏକ ଅପରିହାର୍ଯ୍ୟ ଅଙ୍ଗ । ଏହା ବିଦ୍ୟାଳୟର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କୁ ଆକୃଷ୍ଟ କରେ । ପିଲାମାନେ ନିଜ ଶ୍ରମରେ ବଢ଼ାଇଥିବା ଗଛଗୁଡ଼ିକରେ ଫୁଲ ଫଳ ଦେଖି ଖୁସି ହୁଅନ୍ତି । ପ୍ରକୃତିପାଠ, ବିଜ୍ଞାନ ଆଦି ଅଧ୍ୟାପନା ସମୟରେ ବଗିଚା ବହୁ ସାହାଯ୍ୟ କରିଥାଏ । ବଗିଚାରେ କାମ କରି ପିଲାମାନେ ଆନନ୍ଦ ପାଆନ୍ତି ଓ କୃଷିବିଷୟରେ ଜ୍ଞାନଲାଭ କରିବାର ସୁଯୋଗ ପାଆନ୍ତି । ପାଣିଦେବା, ମାଟି ହାଣିବା ଆଦି କାର୍ଯ୍ୟ ଦ୍ୱାରା ଅଙ୍ଗଚାଳନା ହୋଇଥାଏ । ଉପଯୁକ୍ତ ଭାବରେ ଗଛଗୁଡ଼ିକର ଯତ୍ନ ନେଇ ସେଗୁଡ଼ିକ ବଢ଼ାଇବା, ଠିକ୍ ସମୟରେ ପରିମାଣ ଅନୁସାରେ ସାର ଦେବା ଆଦି ପିଲାମାନେ ଶିକ୍ଷା କରିବାର ସୁଯୋଗ ଲାଭ କରନ୍ତି । ବିଶେଷ ପୋକ ଦାଉରୁ ଗଛର ସୁରକ୍ଷା ସମ୍ପର୍କରେ ଜ୍ଞାନ ଲାଭ ହୋଇଥାଏ ।

ଦୁଃଖର କଥା ଆମ ରାଜ୍ୟର ଖୁବ୍ କମ ବିଦ୍ୟାଳୟରେ ଆଦର୍ଶ ବଗିଚାଟିଏ କରିବାର ସୁବିଧା ଅଛି । ଏପରି କେତେକ ବିଦ୍ୟାଳୟ ଅଛି ଯେଉଁଠି ଜମିଥିଲେ ମଧ୍ୟ ଅନ୍ୟ କେତେକ ଅସୁବିଧା ଯୋଗୁ ବଗିଚା କରିବାରେ ଅନ୍ତରାୟ ସୃଷ୍ଟି ହୁଏ ।

ଶିକ୍ଷକ ମହାଶୟ ବଗିଚାଟିକୁ ଅଧ୍ୟାପନାରେ ଏକ ଏକାନ୍ତ ପ୍ରୟୋଜନୀୟ ଅଙ୍ଗ ବୋଲି ବୁଝିବେ ସେ ଦିଗରେ ଯଥା ସମ୍ଭବ ଯତ୍ନବାନ ହେଲେ ଅନେକାଂଶରେ ଏହା କରାଯାଇ ପାରିବ ।

ସପ୍ତାହରେ ମାତ୍ର ଗୋଟିଏ ପିରିଅଡ୍ ବଗିଚା ପାଇଁ ରଖାଯାଇଛି । ଏଥିପାଇଁ ସ୍କିମ୍ କରିବାର ଆବଶ୍ୟକତା ନାହିଁ । ଯେଉଁଠି ଆଦୌ ବଗିଚା ନାହିଁ ବା କରିବାର ସୁଯୋଗ ନାହିଁ ସେ ସ୍ଥାନରେ ଏହି ପିରିଅଡ୍‌ଟିକୁ ଅନ୍ୟ ପାଠରେ ବ୍ୟୟ କରାଯିବା ଉଚିତ । ଯେଉଁଠି ସୁବିଧା ଅଛି ସେଠାରେ କେଉଁ ଦିନ କେଉଁ କାର୍ଯ୍ୟ କରାଯିବ ତାହା ଶିକ୍ଷକ ନିଜେ ସ୍ଥିର କରିବେ ।



# ବାଳସଭା

ସପ୍ତାହରେ ବାଳସଭା ପାଇଁ ଦୁଇଗୋଟି ପିରିଅଡ଼ର ବ୍ୟବସ୍ଥା କରାଯାଇଛି । ପ୍ରତି ଶନିବାର ଦିନ ଏହା କରାଯିବା ଉଚିତ । ଲଗ ଲଗ ଦୁଇଟି ପିରିଅଡ୍ ବାଳସଭା ପାଇଁ ରଖିଲେ ସମୟ ନିଅଣ୍ଟ ହେବନାହିଁ । ଏହି ପିରିଅଡ଼ରେ ପିଲାମାନେ ଶୃଙ୍ଖଳାର ସହିତ ବସିବେ । ଜଣକ ପରେ ଜଣେ ଠିଆହୋଇ ସେମାନଙ୍କର ଅନୁଭୂତ ସ୍ପଷ୍ଟଭାବରେ ସୁନ୍ଦର ବାକ୍ୟରେ ପ୍ରକାଶ କରିବେ । ଏ ଦିଗରେ ଶିକ୍ଷକ ସେମାନଙ୍କୁ ଉତ୍ସାହିତ କରିବେ । ସଦାଳାପ, ବକ୍ତୃତା ପ୍ରତିଯୋଗିତା, ଛୋଟ ଛୋଟ ଅଭିନୟ ଆଦି ଏହି ପିରିଅଡ଼ମାନଙ୍କରେ କରାଯାଇ ପାରିବ ।

# SCHEME OF LESSONS

## ENGLISH - CLASS - IV

TOTAL WEEKS DURING THE SESSION—40

Total Period in the year 40 × 4 = 160

JUNE 1 × 4 = 4 Periods

Admission of Students.

JULY 4 × 4 = 16 Periods

Alphabets – (Capital Letters)
through words and pictures and models

APE, BOOK, CAT, DOG, FAN, GUN,
HORSE, INKPOT JUG, KID, LEG, MONKEY NIB,
ORANGE, PIG, QUEEN, RAT, SUN, TIGER
UMBRELLA, VAN, WATCH, 'X' MASS' YARK ZOO.

AUGUST – 4 × 4 = 16 Periods

Alphabets- (Small letters)
through words and pictures as above

Numbers :- 1, 2, 3, 4, 5, 6, 7, 8, 9, 0.

SEPTEMBER 4 × 4 = 16 Periods

1. Words with 'a and an,

A book, A cat

A pen, A fish.

2. Words with 'a' and 'an'

An apple, An orange, An egg, An inkpot, An umbrella,

3. Structure — This is + object. (Lesson 1)

This is a box. This is a bag This is a pen.

4. Structure — This is + object, That is + object.

This is an — That is an —

Lesson 1 (Contd)

This is an elephant, That is an apple, This is an egg, That is an orange.

5. Test— 1

6. Structure— This is — and That is — Lesson — 2

(i) This is a door and This is a window.

(ii) This is a bus and That is a car.

7. Structure— This is (name) That is (name) Lesson —3

This is Ashok. That is Meera

This is Mr Naik. That is Miss Sahu.

8. Structure — 'S' (possion) Lesson-4

This is Mr, Naik's bag. That is Gita's doll.

9. Test— 2

10. Structure — Adjective (predicative) Lesson-5

This is Rama's kite. Rama's kite is red.

11. Adjectives — (Contd) Lesson-6

This car is green. Thaf car is blue.

12. Adjectives (contd)
   (i) different Colours, Red, Yellow, blue, etc.
   (ii) tall and Short.
   (iii) big and small.

13. Adjectives [Contd]
   fat and thin. long and short.

14. Revision of different adjectives.

15. Test—3

16. Revision of Test-3

OCTOBER 3 × 4 = 12 Periods

1. Structure— He is, She is, It is Lesson-7
   This is Gopal. He is Mohan's brother. That is Rita. She is Mr. Pradhan's daughter. That is Miss Sohu's car It is black.

2. Relations – father, mother, daughter, son etc.

3. Test—4:

4. Structure His/Her Lesson-8
   Sujit's father is tall. His coat is black.
   Sujit's mother is fat Her dress is blue.

5. Structure His/Her (contd)

6. Structure my/your Lesson-9
   My name is Ajit. This is my kite. My Kite is red. Your kite is yellow.

7. Structure— my/your (Contd)

8. Test - 5.

9. Structure – What is this ? It is………Lesson-10
   What is this ? It is a table, What is that ? That is a blackboard.

10. Lesson—10 (Contd)

11. Test 6

12. Revision of the Structures
    His / Her, My / Your, What is this.

NOVEMBER 4 X 4 =16

1. Structure—Is this / is that ... ... ...
   Yes it is, he / she is
   No it / he / she is not
   a) Is this a car ? Yes it is,
   b) Is that a book, Yes it is,
   c) Is that a girl, Yes she is
   d) Is that a boy, Yes he is
   e) Is that a teacher No she is not,

2. Revision of the Structures in Lessan II

3. Test—7

4. Structure—I am……you are
   I am Ashok
   You are Gita

5. Structure – I am / you are (Contd)

6. Test—8

7. Structure—Are you…? No, I am not…Lesson—13
   Are you a boy, No. I am not I am a girl.

8. Structure—Are you…? in Lesson—13 ( Contd )

9. Test - 9

10. Lesson—14
What is your name ?
What is your father's name ?
What is your teacher's name ?

11. Structure the ( Lesson - 15 as Sequence marker )
This is an apple. THE apple is red

12. Structure 'the' ( Contd )

13. Adjectives ( attributive ) Lesson - 16
The bird is small
It is a small bird
It is not a big bird

14. Adjectives (attributive) (Contd)

15. Test 10

16. Structure 'the' ( Unique ) (Contd ) Lesson - 17
This is my room
THE floor is black and THE door is red

DECEMBER 3 × 4 = 12

1 Test 11

2. Lesson 18-Structure – in, on, under
The pen is in the bag
The book is on the table
The dog is under the table

3. Structure - in, on, under (Contd)

4. Test - 12

5. Plurals — S/- Z/- IZ/-

One ship two ships

One book three books

Two buses five cups

6. Plurals ( Contd )

7. Plurals ( Contd )

8. Structure 'There are' - Lesson 19

There are four books on the table

9. Structure There are··· (Contd )

10. Structure There is ··· ···

There is a Pen in the box (Lesson 20 )

11. Structure There is ··· (Contd)

12. Structure — Is there ··· ? (Lesson 21)
Are there ··· ?

Is there a cow under the tree ?

Are there flowers in the garden ?

JANUARY — 4 × 4 = 16 Periods

1. Structure — Is there / Are there. Is not / are noi, (Contd)

Is there fish in the bottle ?

No there is not.

Are there shoes in the shop

No there are not.

2. Structure is there / Are there··(Cond)

3. Test - 13

4. Structure — Where is ... ? Lesson 2 2
   Where is the umbrella.

5. do

6. Structure— Where are ...? Lesson 23
   Where are the boys ?

7. do

8. Test - 14

9. Structure these / those. Lesson 24
   These are boys. Those are girls.

10. do

11. Revision of Structures, Lesson 25
    This is, These are
    There is, There are

12. do

13. Structure 'they' (Plural of it) Lesson 26

    These are my shirts
    They are white

14. Structure 'they'

    What are these, They are mangoes.

15. do

16. Test - 15

FEBRUARY — 4 X 4 = 16

1. Structure here / there / too Lesson- 27

   Rama is here

   His father is there

2. do

3. Structure — here / there / too (Contd)

4. Revision of Structures in Lesson - 28

5. Test—16

6. Structure — We, You, Our, Their in Lesson - 29

   We are boys.

   You are girls.

   Our bags are green

   Their shoes are black

7. do

8. Structure — We, You, Our, Their, (Contd)

9. Test - 17

10. Structure — near. Lesson - 30

11. Structure — over. do

12. Structure — bh ind do

13. Structure — in front of do

14. Structure — between do

15. Test — 18

16. Structure — have/has Lesson-31

    I have a bicycle.

    Gopal has a watch

MARCH — 3 × 4 = 12

1. Structure – has / have (Contd)
2. Test – 19
3. Structure- Howmany Lesson-32
   a) Howmany hands have you ?
4. Days of the week
5. Months of the year
6. Letters of the English Alphabets
7. Number from I to 100
8. Structure – 'Who' (Ordinals) Lesson - 33
9. Test – 20
10. Structure — Present progressive ( –ing forms) Lesson - 34
    He is runting
11. Structure – Present progressive ( –ing forms) Lesson-35 (contd)
    What is Kamala doing?
    She is singing
12. Structure – ( + ing froms ) Contd

APRIL — 4 × 4 = 16

1 Direct Objects – Lesson-36
  What is she doing ?
  She is writing A LETTER.
2. Test - 21
3. Test - 22 ( Contd )

4. Structure— Coming from / Going to Lesson - 37
5. do
6. Imperativse – Lesson - 38
Good morning, Sit down lpease,
Standup, Open your book.
Read the Lesson etc
7. Imperatives – (Contd)
8. Structure – Me, You, Him, Her, Lesson - 39
9. do (Contd)
10. Revision – Lesson - 40
11. Revison – Lesson - 40 (Contd)
12. Test - 23
13. Vocabulary –
14. do
15. Numbers I to 100
16. do (Contd)

MAY – 2 × 4 = 8

Revision

ANNUAL EXAMINATION



# ବିଜ୍ଞପ୍ତି

## ପ୍ରାଥମିକ ଶିକ୍ଷକ ସମାଜର ଜାତୀୟ ପ୍ରତିଷ୍ଠାନ

"ନ୍ୟାସନାଲ୍ ପ୍ରେସ" ପ୍ରକାଶିତ:—

ପୁରୀଠାରେ ଥିବା ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ "ନ୍ୟାସନାଲ ପ୍ରେସ" କର୍ତ୍ତୃକ ଶିକ୍ଷକ, ଛାତ୍ର ଏବଂ ବିଦ୍ୟାଳୟମାନଙ୍କରେ ନିତ୍ୟବ୍ୟବହାର ଉପଯୋଗୀ ନିମ୍ନଲିଖିତ ଅତ୍ୟାବଶ୍ୟକୀୟ ଫର୍ମସ ପୁସ୍ତକ ଛପା ହୋଇ ରକ୍ଷିତ ଅଛି । ଶିକ୍ଷକ ବନ୍ଧୁମାନଙ୍କଠାରୁ ଅର୍ଡର ପାଇବା ମାତ୍ରେ ସୁବିଧାରେ ତୁରନ୍ତ ଭି: ପି: ଦ୍ୱାରା ଯୋଗାଇ ଦିଆଯାଏ ।

୧ । ଛାତ୍ର ଉପସ୍ଥାନ ବହି ।

୨ । ଶିକ୍ଷକ ଉପସ୍ଥାନ ବହି ।

୩ । ପ୍ରବେଶିକା ବହି ।

୪ । ସାର୍ଟିଫିକେଟ ବହି ।

୫ । ଶିକ୍ଷଣୀୟ ଶୁଦ୍ଧଶୁଦ୍ଧ୍ୟ ମଟେ ।'।

୬ । ବଲ୍‌ଭାଉଚର ଫର୍ମ ।

୭ । ପ୍ରୋଗ୍ରେସ ରିପୋର୍ଟ ଫର୍ମ ।

୮ । ୫ମ ଶ୍ରେଣୀ ପରୀକ୍ଷାର୍ଥୀଙ୍କ ପାଇଁ ।

(କ) ଉ· ଅଭ ଫର୍ମ ।

(ଖ) ମାର୍କସିଟ୍ ଫର୍ମ ।

(ଗ) ଆଡ଼ମିଟ୍ କାର୍ଡ଼ ।

୯ । ପାଠ୍ୟଖସଡ଼ା [ ସମସ୍ତ ଶ୍ରେଣୀ ପାଇଁ ସ୍ୱତନ୍ତ୍ର

୧୦ । ପ୍ରଶ୍ନପତ୍ର:- ସିଲବସ ଅନୁଯାୟୀ ବର୍ଷମଧ୍ୟରେ ହେଉଥିବା ତିନୋଟି ପରୀକ୍ଷାପାଇଁ ଛପା ପ୍ରଶ୍ନପତ୍ର ଉତ୍ତମ ଜିଲ୍ଲାର ଅଭିଜ୍ଞ ଶିକ୍ଷକମାନଙ୍କୁ ନେଇ ଗଠିତ ପ୍ରଶ୍ନବୋର୍ଡ ଦ୍ୱାରା ପ୍ରସ୍ତୁତ ହୋଇଥାଏ ।

---

ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡ଼େରେସନ ପକ୍ଷରୁ ନ୍ୟାସନାଲ ପ୍ରେସରେ ପୁରୀଠାରେ ମୁଦ୍ରିତ—୧୯୮୫